# କଖାରୁ ଜାତ ଫଂଫଳ



ଡକ୍ଟର ଶ୍ରୀ ବିଶ୍ୱନାଥ ସାହୁ, ପି, ଏଚ୍, ଡି,

# କଖାରୁ ଜାତ ଫସଲ


ଲେଖକ:—

ଡକ୍ଟର ଶ୍ରୀ ବିଶ୍ୱନାଥ ସାହୁ, ବି, ଏଜି, (ନାଗ)

ଏମ୍, ଏସ୍, ଏ (ଟରଣ୍ଟୋ)

ପି, ଏଚ୍ ଡି (ମିଶିଗାନ)



ନୂତନ ସଂସ୍କରଣ

ପ୍ରକାଶକ—

ଶ୍ରୀ ନରହରି ନାୟକ

ଭାରତୀ ମହଲ

କେନ୍ଦ୍ରାପଡା





ମୂଲ୍ୟ—୧୦ୟ ଅଓଡ଼ିକ୍ରି ୧୦୯

# ସୂଚୀ


| ବିଷୟ | ପୃଷ୍ଠା |
|---|---|
| **କଖାରୁ ଜାତୀୟ ଫସଲ** | ୧ |
| ୧। ବୋଇତି କଖାରୁ | ୮ |
| ୨। ସ୍କ୍ୱାଶ | ୧୫ |
| ୩। ପାଣି କଖାରୁ | ୧୮ |
| ୪। ଲାଉ | ୨୦ |
| ୫। ଜହ୍ନି ଜାତୀୟ ଫସଲ | ୨୨ |
| ୬। ଚଢ଼ାଇଡା | ୨୨ |
| ୭। ମଧୁର ତରଡ଼ା | ୨୨ |
| ୮। ପିତା ତରଡ଼ା | ୨୮ |
| ୯। ତରଭୁଜ ଜାତି ଫସଲ | ୨୮ |
| ୧୦। ତରଭୁଜ | ୨୯ |
| ୧୧। କାକୁଡ଼ି ଜାତୀୟ ଫସଲ | ୩୩ |
| ୧୨। କାକୁଡ଼ି | ୩୪ |
| ୧୩। ବଙ୍କା କାକୁଡ଼ି | ୩୮ |
| ୧୪। କସ୍ତୁରି ତରଭୁଜ | ୪୦ |
| ୧୫। ଫୁଟି | ୪୩ |
| ୧୬। କଲରା ଜାତି ଫସଲ | ୪୪ |
| ୧୭। କାଙ୍କଡ଼ | ୪୬ |
| ୧୮। ପୋଟଳ | ୫୦ |
| ୧୯। ଛଚିନ୍ଦା | ୫୯ |
| ୨୦। ପୋଡ଼ଲ | ୬୦ |
| ୨୧। କୁନ୍ଦୁରି | ୬୧ |
| ୨୨। କଇଁଚ କାକୁଡ଼ି | ୬୨ |
| ୨୩। ଚୌଚୌ ବା ସ୍କ୍ୱୋଟ | ୬୩ |


—o—

## - ମୁଖବନ୍ଧ --

ମନୁଷ୍ୟ ସମାଜର ଉନ୍ନତି ଆରମ୍ଭରୁ ପନିପରିବା ଖାଦ୍ୟର ଏକ ପ୍ରଧାନ ଅଙ୍ଗ ରୂପେ ଧରାଯାଇଛି । ସେହି ପନିପରିବା ମଧ୍ୟରେ କଖାରୁ ବର୍ଗ ବା ଜାତି ଫସଲ ବୋଧ ହୁଏ ସବୁ ପ୍ରଥମେ ଚାଷକରାଯାଉଥିଲା । ପୃଥିବୀର ସବୁ ଅଞ୍ଚଳରେ ଏବଂ ସମସ୍ତ ମାନବ ଜାତି ମଧ୍ୟରେ କଖାରୁ ବର୍ଗ ଫସଲ ଚାଷ ଅଳ୍ପ ବହୁତ ପରିମାଣରେ ଦେଖାଯାଏ । ଏସିଆ, ଇଉରୋପ, ଆଫ୍ରିକା, ଅଷ୍ଟ୍ରେଲିଆ, ଉତ୍ତର ଆମେରିକା, ଦକ୍ଷିଣ ଆମେରିକାର ଆଦିବାସୀ ଓ ଅନ୍ୟାନ୍ୟ ଉନ୍ନତ ତଥା ସଭ୍ୟ ଜାତି କଖାରୁ ବର୍ଗ ପନିପରିବା ବ୍ୟବହାର କରନ୍ତି । ମରୁଡି ସହିବା ଏହି ଜାତୀୟ ଫସଲର ବିଶେଷତ୍ୱ । ଏଣୁ ଖରା ବର୍ଷା ଶୀତ ସବୁ ଋତୁରେ କଖାରୁ ବର୍ଗ ଫସଲ ଚାଷ କରାଯାଏ ।

ଓଡ଼ିଶାରେ କଖାରୁବର୍ଗ ଫସଲ ବିଶେଷ ପରିମାଣରେ ଆଦର ପାଇଥାଏ । ବିବାହ, ବ୍ରତ ଓ ପର୍ବ ପର୍ବାଣିରେ କଖାରୁବର୍ଗ ଫସଲ ବିଶେଷ ସ୍ଥାନ ପାଇଥାଏ । ଦୂର୍ଗା ବାହନ ପୂଜା ଏବଂ ଦୁର୍ଗାଙ୍କ ସନ୍ଧି ପୂଜା ବଳିଦାନରେ ପାଣିକଖାରୁ ଓ ବୃହତ 'କାକୁଡ଼ି' ବଳି ରୂପେ ଦିଆଯାଏ । ଗଣେଶ ଚତୁର୍ଥୀ ଏବଂ କୁମାର ପୂର୍ଣ୍ଣିମା ପୂଜା ଡାଲାରେ କାକୁଡ଼ି ଅତି ଆଦର ଫଳ । ଚାଷୀର ଆର୍ଥିକ ଜୀବନରେ କଖାରୁ, ଲାଉ, ଜହ୍ନି, କୁନ୍ଦୁରି, ପୋଟଳର ଗୁରୁତ୍ୱ ସାମାନ୍ୟ ନୁହେଁ । ସୁତରାଂ ଏହି ବର୍ଗ ଫସଲ ଗୁଡ଼ିକର ବୈଜ୍ଞାନିକ ଚାଷ ପ୍ରଣାଳୀ ଜାଣିବା ଆବଶ୍ୟକ ।



# —ଗଳ୍ପ ସୂଚୀ—


୧। ବୋଇତ କଖାରୁ ୧୨

୨। ପାଣି କଖାରୁ ୧୮

୩। ଲାଉ ୨୦

୪। ଜହ୍ନୀ ୨୪

୫। ତରଭୁଜ ... ୩୦

୬। କାକୁଡ଼ି ... ୩୬

୭। ଫୁଟି ୪୩

୮। କଲରା ୪୫

୯। କାଙ୍କଡ଼ ୪୮

୧୦। ପୋଟଳ ୫୨

୧୧। କଇଁଥି କାକୁଡ଼ି ୬୧

— ପ୍ରଥମ ପରିଚ୍ଛେଦ —

# କଖାରୁ ଜାତି—ଫସଲ

## ( CUCURBITS, VINE CROPS )

କଖାରୁ ଜାତୀୟ ଫସଲ ଲଟା ଫସଲ । ତିନ ଚେଉଟି-ଧନ ପର୍ଯ୍ୟନ୍ତ ଲଟେଇବା ପରେ ଫୁଲ ଫଳ ଧରେ । ଏହି ଜାତୀୟ ଫସଲ ଗୁଡ଼ିକ ବଢ଼ିବା ଲାଗି ଅଧିକ ଉତ୍ତାପ ଦରକାର କରନ୍ତି । ୭୫°ରୁ ୮୫° ଡିଗ୍ରି ଫାରେନ୍‌ହାଇଟ୍ ଉତ୍ତାପ ଫସଲ ପକ୍ଷରେ ଅନୁକୂଳ । ୭୦° ଡିଗ୍ରି ଫାରେନ୍‌ହାଇଟ୍‌ରୁ ଊଣା ଉତ୍ତାପରେ ଲଟା ମାଡ଼େ ନାହିଁ; ତେର ମଢ଼ିଯାଏ । କୀଟପତଙ୍ଗଦ୍ୱାରା ପରାଗ ସଙ୍ଗମ ହୁଏ । ପ୍ରତ୍ୟେକ ଫସଲ ଭଲରୂପେ ମାଞ୍ଜି ଫୁଲ ଫଳ ଧରିବା ଲାଗି ବହୁତ ପାଣି ଦରକାର କରେ । କିନ୍ତୁ ଅନେକଙ୍କର ମରୁ ସହଣୀ ( Xero morphic ) ଗୁଣ ଅଛି । ଯଥା:— ପତ୍ରର ତଳପାଖ ଲୋମରେ ପରିପୂର୍ଣ୍ଣ ନଟେଇ ଶକ୍‌ଲଣ । କେତେକଙ୍କ ଜାତ ଚେର ପତ୍ର ଛୁଣ୍ଡା ଛୁଣ୍ଡା । ଯଥା:— କଲରା, ତରଭୁଜ । ଅଧିକ ପାଣି ଦରକାର କରୁଥିବା ଫସଲଗୁଡ଼ିକର ଲଟାରୁ ପାଣି ବାହାର ଯିବା ଲାଗି ମଧ୍ୟ ଉପାୟ ଅଛି । ଏହି ଉପାୟ ବା ଗଠନକୁ 'ହାଇଡ୍ରା

**ଥୋଡ଼୍'** (Hyda thode) କୁହାଯାଏ । କଖାରୁ, ପାଣି କଖାରୁ, ଲାଉ ଓ କାକୁଡ଼ି ପତ୍ରରେ ଏହି ଗଠନ ଅଧିକ ପରିମାଣରେ ଦେଖାଯାଏ ।

ଅନ୍ୟ ଜାତ ଗଛର ପତ୍ରରେ ପ୍ରସ୍ୱେଦନ କିମ୍ବା ଗ୍ଳସ୍-ଥିବା ବେଳେ ଶ୍ୱେତସାର ଓ ଅନ୍ୟାନ୍ୟ ଖାଦ୍ୟ ତିଆର କାମ କମିଯାଏ । ମାତ୍ର କଖାରୁ ଜାତ ଗଛପତ୍ରରେ ଏହି ଦୁଇଟି କାମ ଏକ ସଙ୍ଗରେ ଚାଲେ । ତେଣୁ କଖାରୁ, ଲାଉ, କାକୁଡ଼ି ଏବଂ କଲରା ପ୍ରଭୃତ ବୈଶାଖ ଖରା ଓ ଝାଞ୍ଜିରେ ବଢି ଫୁଲ ଫଳ ଧରେ ।

**ଶ୍ରେଣୀ ବର୍ଣ୍ଣନ :—** ଲତାର ପତ୍ର, ଅକର୍ଷି ( Tendril ), ଫୁଲ ଏବଂ ଫଳର ଗୁଣ ଭେଦରେ କଖାରୁ ଜାତ ଫସଲର ଶ୍ରେଣୀ ବିଭାଗ କରାଯାଏ । ଏହି ବର୍ଗ ଫସଲର ଫଳକୁ ଦୁଇ ଭାଗରେ ବିଭକ୍ତ କରା ଯାଇଥାଏ; ଯଥା:— (୧) ପେପୋ ( Pepo ) ଏବଂ (୨) ବେରି ( Berry )

**ପେପୋ :—** ଫଳ ପାଚିଲେ ଫାଟେ ନାହିଁ । ଫଳ ତିନିଟି ଥାକରେ ଗଢା । ପ୍ରଥମ ଥାକକୁ ବକ୍ରଳା (Pericarp) କୁହାଯାଏ । ମଝି ଥାକ ( Mesocarp ) ମାଂସଳ ଓ ନରମ । ଭିତର ଥାକ (Endocarp)ରେ ମଞ୍ଜି ଥାଏ ଯଥା:— ବୋଇତାଳୁ ବା ବୋଇତି କଖାରୁ,ଲାଉ,ପାଣି କଖାରୁ ଏବଂ କାକୁଡ଼ି ।

**ବେରି :—** ଫଳ ପାଚିଲେ ଫାଟିଯାଏ ଏବଂ ମଞ୍ଜି ବାହାରି ପଡ଼େ; ଯଥା— କଲରା, ଫୁଟି ।

**ମାଟି :—** ବାଲିଆ, ଦୋରସା ଏବଂ ଗୋଡ଼ିଆ ମାଟି କଖାରୁ ଜାତ ଫସଲ ଲାଗି ଉପଯୁକ୍ତ । ପଟୁ ପଡିଥିବା ମାଟିରେ ପୋଟଳ, ବୋଇତି କଖାରୁ, ପାଣି କଖାରୁ, ତରଭୁଜ ଓ କାକୁଡ଼ି ଭଲ ହୁଏ ।

ବର୍ଷାଋତୁରେ ଉଚ୍ଚା ଜାଗିଡ଼ା ଭିଟ ଜମି ନଚେତ୍ ଟାଙ୍ଗି ଜମିରେ କଖାରୁ ଫସଲ ଭଲ ହୁଏ । ସନ୍ତସନ୍ତିଆ ଜମିରେ ଗଛ ଚେର ମାଡ଼ି ପାରେ ନାହିଁ; ତେଣୁ ହଳଦିଆ ପଡ଼ି ଜହରି ଯାଏ ।

ମାଟିର ଖାର ଓ ଅମ୍ଳ ଗୁଣ କଖାରୁ ଜାତି ଫସଲ ଉପରେ ବିଶେଷ ପ୍ରଭାବ ପକାଇ ଥାଏ । କେଉଁ ଜାତି ଲଟା କେତେ ଭାଗ ଅମ୍ଳ ସହ୍ୟ କରିପାରେ ତାର ସୂଚନା ତଳେ ଦିଆଗଲା ।

| କଖାରୁ ଜାତି ଫସଲ | ଫସଲ ଲାଗି ମାଟିର ଅନୁକୂଳ ଅମ୍ଳଭାଗ | ମାଟିର ଅମ୍ଳଭାଗ ଦୂରାଇବା ଲାଗି ଏକର ପ୍ରତି ଚୂନର ପରିମାଣ |
|---|---|---|
| କଖାରୁ | ୫.୮ — ୭.୮ | ୧୨ ମହଣ |
| ଝାକୁଡ଼ି | ୬.୦ — ୭.୮ | ୪ ମହଣ |
| ତରଭୁଜ | ୫.୦ — ୫.୫ | —— |
| ଫାଲ୍‌ଗୁଣି | ୫.୦ — ୭.୫ | —— |

ଏଥିରୁ ଦେଖା ଯାଉଛି ଯେ ସାମାନ୍ୟ ଅମ୍ଳଭାଗର ଖାର ମାଟି କଖାରୁ ଫସଲ ଲାଗି ଭଲ । ଅମ୍ଳଭାଗ ଅଧିକ ମାଟିରେ କଖାରୁ ଫସଲ ଲାଗି ପ୍ରତି ଶହେ ବର୍ଗଫୁଟରେ ଦୁଇସେର ଏବଂ ଝାକୁଡ଼ି ଫସଲ ଲାଗି ଅଧସେର ଶିପ ଚୂନ ମିଶାଇ ଦେବ । ତରଭୁଜ, ଫୁଟି ଓ ଜହ୍ନି ଫସଲ ଚୂନ ଦରକାର କରନ୍ତି ନାହିଁ ।

**ମାଟି ତିଆରି :—** କଖାରୁ ଜାତି ଫସଲ ସାଧାରଣତଃ ମଦାରେ ଲଗାଯାଏ । ବଡ଼ଆ ମାଟିରେ ଅଣ୍ଡାଡ଼ିଆ କଖାରୁ ଲାଗି ୧୦ ଫୁଟ × ୧୦ ଫୁଟ ଏବଂ ପଠା କଖାରୁ ଲାଗି ୫ ଫୁଟ × ୫ ଫୁଟ ପରସର ବଣିଷ୍ଣୁ ମଦା ଦରକାର । ସାତପଞ୍ଚୁର ଜହ୍ନି, ମୁଣ୍ଡି ଝାକୁଡ଼ି ଏବଂ ତରଭୁଜକୁ ଗୁଣ୍ଡ ଗୁଷ ପରେ ସିଅର କାଟି ଲଗାଇବ ।

**ମଞ୍ଜି ଲଗାଇବା:—** ମଧା ପ୍ରତି ୫-୬ଟି ମଞ୍ଜି ଲଗାଇବ । ଗଛ ଉଠିଗଲେ ମନ୍ଦାରେ ଦୁଇ ତିନୋଟି ଗଛ ରଖି ବାକିତକ ଗଛ ଉପାଡ଼ି ଦେବ ।

**ମଞ୍ଜି ଲଗାଇବା ବିଧି :—** ଭେଣ୍ଡି ଜାତ ଫସଲ "ମୃତ୍‌ଭେଦୀ" ଅର୍ଥାତ୍ ମଞ୍ଜି ଗଜାହେବା ବେଳେ ବୀଜପତ୍ର ଦୁଇଟି ଖୋସା ମଧ୍ୟରେ ନ ରହି ମାଟି ଉପରକୁ ବାହାରି ଆସେ । ବୀଜପତ୍ର ବଢ଼ିବା ସଙ୍ଗେ ସଙ୍ଗେ ବୀଜପତ୍ର ଅବକାଣ୍ଡ ବିଶେଷ ପରିମାଣରେ ଲମ୍ବି ଯାଏ । ଏହି ଅବକାଣ୍ଡ ମାଟିକୁ ସିଧାସଳଖ ନ ଫୁଟାଇ ଧନୁ ଆକାରରେ ବାହାରେ । ଏହି ଧନୁ ଆକୃତିର ଅଙ୍ଗକୁ "କୀଳକ" ( Peg ) କୁହାଯାଏ । ଏହି କୀଳକ ପୃଥିବୀର ମାଧ୍ୟାକର୍ଷଣ ଶକ୍ତି-ଦ୍ୱାରା ପ୍ରଭାବିତ ହୁଏ ନାହିଁ । କିମ୍ବା ମାଟି ଫୁଟାଇ ଆସିବା ବେଳେ ସେହି ଆକୃତିରେ କିଛି ପରିବର୍ତ୍ତନ ଘଟେ ନାହିଁ । ଏହି କୀଳକ ଖୋଳପାକୁ ଧରି ରଖିଥିବାରୁ ବୀଜପତ୍ର ଦୁଇଟି ଅବାଧରେ ଉପରକୁ ବାହାରି ପଡ଼େ ତେଣୁ ମଞ୍ଜିଗୁଡ଼ିକୁ <u>ଖୋଜ ପକାଇ</u> ଲଗାଇବ । ଜୋକିଆ ଅଙ୍ଗକୁ ତଳ ବା ଉପର କରି ପୋତିବ ନାହିଁ ।

**ପରାଗସଙ୍ଗମ ଓ ଫଳଧରିବା:—** ଅଣ୍ଡିରା ଏବଂ ମାଈ ଫୁଲ ଲଟାର ବିଭିନ୍ନ ଗଣ୍ଠିରେ ଧରେ । ମାଈଫୁଲ ଠାରୁ ଅଣ୍ଡିରା ଫୁଲ ସଂଖ୍ୟା ଅଧିକ। ଅନ୍ତତଃ ବାରଟା ଅଣ୍ଡିରା ଫୁଲରେ ଗୋଟାଏ ମାଈ ଫୁଲ ଦେଖାଯାଏ ।

ଅଣ୍ଡିରା ଫୁଲର ପରାଗରେଣୁ ଅଠାଳିଆ, ପବନରେ ଉଡ଼ିଯାଏ ନାହିଁ । ତେଣୁ କୀଟପତଙ୍ଗ ଦ୍ୱାରା ପରାଗସଙ୍ଗମ ହୁଏ । କୀଟପତଙ୍ଗ ସଂଖ୍ୟା ବଢ଼ାଇବା ଲାଗି ଭେଣ୍ଡି ଜାତ ଫସଲ କିଆରି ପାଖରେ ମହୁମାଛି ବାକ୍ସ ରଖିବା ଭଲ ।

**କଷି ଝଡ଼ିପଡ଼ିବା:**—ପରାଗସଙ୍ଗମ ଅଭାବ ଘଟିଲେ କଷି ଝଡ଼ିପଡ଼େ । ପରାଗସଙ୍ଗମ ହେଲେ ମଧ୍ୟ ଶ୍ୱେତସାର ଅଭାବ ପଡ଼ିଲେ ଭ୍ରୂଣ ବଢି ପାରେନାହିଁ; ତେଣୁ କଷି ଶୁଖିଯାଇ ଝଡ଼ିପଡ଼େ । ଶ୍ୱେତସାର ଉପାଦାନ ତିଆରିଲାଗି ପୋଟାଶ ଦରକାର । ତେଣୁ କଖାରୁ, କାକୁଡ଼ି ଓ ପୋଟଳ ମଞ୍ଚାରେ ପାଉଁଶ ପେଣ୍ଡି ମଞ୍ଜି ଲଗାଇବ ।

**ଖାଣ୍ଟି ମଞ୍ଜି**-କୀଟପତଙ୍ଗ ଅଣ୍ଡିରାଫୁଲରେ ବସି ମାଈଫୁଲରେ ବସିଲେ ପରାଗସଙ୍ଗମ ହୁଏ । କୀଟପତଙ୍ଗ ଆଖପାଖ ଯେ କୌଣସି କଖାରୁଜାତ ଫସଲ ଉପରେ ବସିପାରନ୍ତି । ତେଣୁ ଯେ କୌଣସି କଖାରୁବର୍ଗ ଫସଲର ଅଣ୍ଡିରା ଫୁଲର ପରାଗରେଣୁ ସେହିବର୍ଗର ଯେ କୌଣସି ଲଟାର ମାଈଫୁଲରେ ପଡ଼ି ଗର୍ଭାଧାନ ହେବାର ସମ୍ଭାବନା ଅଛି । ଏହି ମିଶା ମିଶି ପରାଗ ସଙ୍ଗମ ହେତୁ ଖାଣ୍ଟି ମଞ୍ଜି ନ ହୋଇ ଦୋମିଶା ବା ବର୍ଣ୍ଣଶଙ୍କର ମଞ୍ଜି ମିଳେ । ବର୍ଣ୍ଣଶଙ୍କର ମଞ୍ଜି ପ୍ରଥମ ବର୍ଷ ଭଲ ଫସଲ ଦେଇପାରେ; ମାତ୍ର ଦ୍ୱିତୀୟ ବର୍ଷରୁ ତାର ଶକ୍ତି କ୍ଷୀଣ ପଡ଼ିବାରୁ ଫସଲ ଅମଦାନି କମିଯାଏ । କେଉଁ ଜାତ ଫସଲର ଅଣ୍ଡିରା ଓ ମାଈଫୁଲ ମଧ୍ୟରେ ପରାଗସଙ୍ଗମ ଘଟେ ତାର ସୂଚନା ତଳେ ଦିଆଗଲା ।

| କେଉଁ ଜାତର ଅଣ୍ଡିରାଫୁଲ | କେଉଁ ଜାତର ମାଈଫୁଲ |
|---|---|
| ବୋଇତି କଖାରୁ ଓ ମାଖନ | ସ୍ୱାଶ |
| ମୃଣ୍ଡି କାକୁଡ଼ି | କଣ୍ଟି ଅଳା |
| ଛଚିନ୍ଦା | ବଡ଼କଲରା |

ଏଣୁ ଦୋମିଶା ବା ବର୍ଣ୍ଣଶଙ୍କର ବନ୍ଦ କରିବାଲାଗି ବୋଇତିକଖାରୁ ଏବଂ ସ୍ୱାଶ, ମୃଣ୍ଡି କାକୁଡ଼ି ଏବଂ କଣ୍ଟି ଅଳା, ତରଭୁଜ ଏବଂ ଚଲଣା ଓ ଛଚିନ୍ଦା ଏବଂ ବଡ଼କଲରା ପାଖାପାଖି ଲଗାଇବ ନାହିଁ ।

**କିପରି ଖାଣ୍ଟି ମଞ୍ଜି ପାଇବ:—**ଖାଣ୍ଟି ମଞ୍ଜି ପାଇବା ଲାଗି ମାଈଫୁଲ ଫୁଟିବା ପୂର୍ବରୁ ସଞ୍ଜବେଳେ କନାମୁଣି ନଚେତ୍ କାଗଜ ଠୁଙ୍ଗା ବାନ୍ଧିଦେବ । ବଡ଼ ସକାଳୁ ସେହି ଲଟାର ଫୁଟିବା ଅଣ୍ଡିରା ଫୁଲ ଆଣି କାଗଜଠୁଙ୍ଗା କାଢିପକେଇ ମାଈଫୁଲର ଗର୍ଭପୀଠ ଉପରେ ଘଷି ଝାଡ଼ିଦେବ । ଏହି କୃତ୍ରିମ ଯୌନ ମିଳନର ଦୁଇଦିନ ଯାଏ ସେହି ମାଈଫୁଲଟିକୁ କାଗଜ ଠୁଙ୍ଗାରେ ଘୋଡେଇ ରଖିବ । ଯେପରି ଅନ୍ୟ ଅଣ୍ଡିରାଫୁଲରୁ କୀଟପତଙ୍ଗ ଉଡ଼ି ଆସି ଏହି ମାଈଫୁଲରେ ନବସେ । ଦୁଇଦିନ ପରେ ଠୁଙ୍ଗା ଖୋଲି ଏହି କଢିଟିକୁ ଚିହ୍ନେଇ ରଖିବ । ଫଳ ପାଚିଲା ହୋଇ ଲଟା ଶୁଖିବା ପରେ କଖାରୁ ବା କାକୁଡ଼ି ତୋଳି ମଞ୍ଜି ଧରିବ ।

**କଖାରୁ ଜାତି ପନିପରିବା ଓ ପୁଷ୍ଟିକାରକ ଉପାଦାନ:—** କଖାରୁ ଜାତି ଫସଲ ଅତି ଆବଶ୍ୟକ ପନିପରିବା । ବୋଇତି କଖାରୁ, ପାଣିକଖାରୁ, ଲାଉ, ଜହ୍ନି, ତରଡା, ଛଚିନ୍ଦ୍ରା, ପୋଟଳ ଏବଂ କୁନ୍ଦୁରି ପ୍ରାୟ ପ୍ରତିଦିନ ତରକାରୀ ଚଳାଏ । କାକୁଡ଼ି, ତରଭୁଜ, କସ୍ତୁରି ତରଭୁଜ ଏବଂ ଫୁଟି କାକୁଡ଼ି ଫଳ ରୂପରେ ବ୍ୟବହାର କରାଯାଏ । ଦେହକୁ ଶକ୍ତି ଯୋଗାଇବା ପକ୍ଷରେ କଖାରୁଜାତି ପରିବାର ଗୁରୁତ୍ୱ ଅଳ୍ପ, ମାତ୍ର ଧାତବ ପଦାର୍ଥ, ଭିଟାମିନ୍ ଯୋଗାଇବା ଏବଂ ଖାଦ୍ୟକୁ ରୁଚିକର କରାଇବାରେ ଏହି ଶ୍ରେଣୀର ଫସଲଗୁଡ଼ିକର ଗୁରୁତ୍ୱ ଅଧିକ । ଏଥିଲାଗି ଏହି ଶ୍ରେଣୀ ଫସଲର ଚାଷ ଅତି ଅଧିକ ହେବା ଦରକାର ।

ଏହି ଶ୍ରେଣୀର ଫସଲ ମଧ୍ୟରୁ ଅନେକ ଅତି ଉପାଦେୟ ଔଷଧ ରୂପେ ବ୍ୟବହାର କରାଯାଏ ।

(୪) **ଭଙ୍ଗଲାବାଡ଼ି:—** ସମ୍ବଲପୁର ସହର ପାଖ ମହାନଦୀର ପଠାରେ ପୌଷ ମାସଠାରୁ ବୈଶାଖ-ଜ୍ୟେଷ୍ଠ ମାସ ପର୍ଯ୍ୟନ୍ତ କଖାରୁ ବାଲୁଙ୍ଗ ଚାଷ କରାଯାଏ । ଏହି ଚାଷ ବାଲିରେ କମ୍ପୋଷ୍ଟ ଖତ ମିଶାଇ ମଞ୍ଜି ଲଗାଯାଏ । ବାଲିତଳ ଓଦା ଥିବାରୁ ଲଟା ବଢେ ଓ ଓ ଫୁଲ ଫଳ ଧରେ ।

---

—ଦ୍ୱିତୀୟ-ପରିଚ୍ଛେଦ—

# ବୋଇତି କଖାରୁ ବା ବୋଇତାଲୁ

## PUMPKIN
## (CUCURBITA MOSCHATA
## CUCURBITA MAXIMA)

ଅମେରିକା କଖାରୁର ଜନ୍ମସ୍ଥାନ ବୋଲି ଧରାଯାଏ । ରେଡ଼ଇଣ୍ଡିଆନ୍ମାନେ ପ୍ରଥମେ ଏହି ଫସଲ ଚାଷ କରୁଥିଲେ । ଭାରତୀୟମାନେ ବିଦେଶରେ ବେପାର ବଣିଜ କରୁଥିବା ସମୟରେ ଏହି ପରିବା ଭାରତକୁ ଆଣିଥିଲେ । ଉତ୍କଳୀୟମାନେ କଖାରୁକୁ ବୋଇତରେ ଆଣିଥିଲେ ବୋଲି ଏହାକୁ ବୋଇତ କଖାରୁ କହିବା ସମ୍ଭବ ।

ବୋଇତକଖାରୁକୁ ସାଧାରଣତଃ ଦୁଇ ଜାତିରେ ଭାଗ କରାଯାଇ ପାରେ; ଯଥା— (୧) ଏସିଆ ମହାଦେଶୀୟ ବୋଇତ କଖାରୁ ଏବଂ (୨) ନୂତନ ମହାଦେଶୀୟ 'ସ୍କାଶ' ।

**ପ୍ରକାର :—** ଋତୁ ଭେଦରେ ବୋଇତ କଖାରୁକୁ ତିନି ଶ୍ରେଣୀରେ ଭାଗ କରାଯାଇ ପାରେ; ଯଥା--

(୧) ଖ୍ୟେଦେଇ ବା ବର୍ଷାଦିନିଆ ।
(୨) ବାଲି କଖାରୁ, ପଠା କଖାରୁ ବା ପାଳ କଖାରୁ ।
(୩) ଚଇତାଳି ବା ଖରାଟିଆ ।

**ଖ୍ୟେଦେଇ :—** ପଣାସଂକ୍ରାନ୍ତି ପରେ ରଜସଂକ୍ରାନ୍ତି ପର୍ଯ୍ୟନ୍ତ ଏହି କଖାରୁ ଲଗାଯାଏ । ଖରା ଝାଞ୍ଜିରେ ଲଗାଯିବାରୁ ଲଟା ପଦାରେ ପାଣିଦେବାକୁ ପଡ଼େ । ବର୍ଷା ଖାଇଲେ ଲଟା ବହୁତ ମାଡେ । ଗ୍ରାମରେ ସାଧାରଣତଃ ଘର ଚାଳ ଉପରେ ଏହି ଲଟା ମାଡ଼େ । କଖାରୁ ଅତି ବଡ଼ ଆକାର ଧର ଫଳେ । କଖାରୁ ପାଚିଲେ ଫମ୍ପା ହୋଇଯାଏ । ଏହି କଖାରୁ ବହୁତ ଦିନ ସାଇତି ରଖି ହୁଏ ।

**ବାଲି କଖାରୁ :—** ନଈବଢ଼ି ଘୁଞ୍ଚିଗଲେ ପଡ଼ି ପଡ଼ିଥିବା ପଠା ବା ପାଳରେ କାର୍ତ୍ତିକ ମାସରେ ମଞ୍ଜି ଲଗାଯାଏ । ଲଟା ଅଧିକ ମାଡେନାହିଁ । କଖାରୁ ତୁଳନାରେ ମଞ୍ଜି ଛୋଟ ଛୋଟ । ଲଟାରେ ବହୁତ ଫଳଧରେ; କଖାରୁ ଚୋପା ମୋଟା ଏବଂ କଖାରୁ ଅଧିକ ମିଠା ।

**ଚଇତାଳି:—** ମାଘମାସରେ ଧାନ କଟାକଟି ପରେ କିଂବା ଆଳୁ ଓ ରୋବିଫସଲ ଉଠି ଯିବାପରେ ଏହି କଖାରୁ ଲଗାଯାଏ ।

ଏହିତିନି ଜାତିର କଖାରୁ ସାଧାରଣତଃ ଲମ୍ବା ଏବଂ ଚେପଟା, ଘଣ୍ଟରୁ ଝୁଲ କିଂବା ମଞ୍ଚା ଓ ପିଢ଼ା ଉପରେ ଫଳିବା-କଖାରୁ ଭଲ ଆକାର ଧର ବଢ଼େ । ମାଟି ଉପରେ ଥୁଆ ହୋଇ ବଢ଼ିବା କଖାରୁହେବା ଟେଢା ଧରଯାଏ ।

ସୂର୍ଯ୍ୟ କିରଣରେ କଖାରୁ ପାଚିଲା ହେଲେ ଗାଢ଼ ରକ୍ତପିତ ରଙ୍ଗ ଧରେ ଏବଂ ମିଠା ଲାଗେ । ବୋଇତ କଖାରୁ କାଟି ପକାଇଲେ ଯାହାର ଭିତର ଗାଢ ହଳଦିଆ ଦେଖାଯିବ ସେହି କଖାରୁ ରଖାହେଲେ

ସେତେ ମିଠା ଲାଗିବ । ଏଥି ଲାଗି ଲଟା ପତ୍ର ଶୁଖିଯିବା ପରେ କଖାରୁ ତୋଳିବ । କଖାରୁ ପାଚିଲା ହୋଇଗଲେ ତାହାର ଗୁଡ଼ ଭାଗରୁ ବୃନ୍ତାପତ୍ର କାଟିଦେବ । ଯେତେ ଟାଣଖରାରେ କଖାରୁ ପାଚିଲା ହେବ ସେତେ ହଳଦିଆ ପଡ଼ିବ, ତାହା ଖାଇବାକୁ ସେତେ ମିଠା ଲାଗିବ । ବାଲି ଓ ପଠା କଖାରୁ ଖୋଲା ଖରାରେ ବଢୁଥିବାରୁ ଖାଇବାକୁ ମିଠାଲାଗେ ।

**ମାଟି ଓ ଲିଙ୍ଗ ଭେଦ:**—ବର୍ଷାଦିନିଆ କଖାରୁରେ ବାଲିକଖାରୁ ଠାରୁ ଅଧିକ ଅଣ୍ଡିରା ଫୁଲ ଏବଂ ଅଳ୍ପ ମାଈଫୁଲ । ବାଲିରେ କଖାରୁ ଲଗାଇଲେ ଅଣ୍ଡିରାଫୁଲ ସଂଖ୍ୟା କମିଯାଏ ଏବଂ ମାଈଫୁଲ ସଂଖ୍ୟା ଅଧିକ ହୁଏ ।

**ଟେବୁଲ:**—କଖାରୁ ଫସଲର ଲିଙ୍ଗ ଭେଦ ଉପରେ ମାଟିର ପ୍ରଭା…

| କଟକ ସରକାରୀ କୃଷି ଫାରମ<br>ମାଟି—ମଟାଳ<br>ଲଟା—ସାତଟି | | | ମହାନଦୀ ଉପକୂଳ ପଠା<br>ମାଟି—ବାଲିଆ<br>ଲଟା—ସାତଟି | | |
|---|---|---|---|---|---|
| ମାସ | ଅଣ୍ଡିରା ଫୁଲ | ମାଈ ଫୁଲ | ମାସ | ଅଣ୍ଡିରା ଫୁଲ | ମାଈ ଫୁଲ |
| ଜୁଲାଇ ୧୫ | ୯୦ | — | ଡିସେମ୍ବର ୧୮ | ୫୪ | ୩ |
| ୨୨ | ୧୨୦ | ୨ | ୨୫ | ୭୨ | ୧୦ |
| ୨୯ | ୧୫୦ | ୭ | ଜାନୁଆରୀ ୧ | ୮୫ | ୧୯ |
| ଅଗଷ୍ଟ ୫ | ୨୦୨ | ୨୯ | ୮ | ୧୦୨ | ୩୪ |
| ୧୨ | ୮୫ | ୩୯ | ୧୫ | ୮୬ | ୫୨ |
| ୧୯ | ୧୫୦ | ୭୫ | ୨୨ | ୭୦ | ୭୦ |
| ସାତଟି ଲଟାର ମୋଟ ଫୁଲ | ୮୯୭ | ୧୫୨ | | ୪୭୦ | ୧୮୮ |
| ଗୋଟିଏ ଲଟାର ହାରାହାରି ଫୁଲ | ୧୨୮ | ୨୧.୭ | | ୭୨ | ୨୭ |
| ଅଣ୍ଡିରା: ମାଈ ଫୁଲ | ୭ | ୧ | | ୨.୫ | ୧ |

**ଲଗାଇବା ସମୟ:**—ଭୋଦେଇ କଖାରୁ ପଣାସଂକ୍ରାନ୍ତିଠାରୁ ରଜ-ସଂକ୍ରାନ୍ତି ଯାଏ, ବାଲିକଖାରୁ ନଈବଢି ଛାଡ଼ିଯିବା ପରେ କାର୍ତ୍ତିକମାସରୁ ପୁଷମାସ ଯାଏ ଏବଂ ଚଇତାଳ କଖାରୁ ପୁଷ୍ପପୁନେଇ ପରେ ଲଗାଯାଏ ।

ବର୍ଷା ଆରମ୍ଭରେ ଖୋର୍ଦ୍ଧା ଅଞ୍ଚଳରେ ଟାଙ୍ଗିମାଟିରେ, ଗଞ୍ଜାମଜିଲ୍ଲାରେ ଧାନକଟା ଶେଷ କରି ଧାନ କ୍ଷେତରେ ଏବଂ ବାଲେଶ୍ୱରର ସୋନନଦୀ ଓ ଭଦ୍ରକର ସାଳନ୍ଦୀ ପ୍ରଭୃତି ନଦୀକୂଳରେ ପୁଷମାସଠାରୁ ବୋଇତ କଖାରୁ ଲଗାଯାଏ ।

**ଲଗାଇବା ପ୍ରଣାଳୀ:**—ମନ୍ଦା କରି କଖାରୁ ଲଗାଯାଏ । ଭୋଦେଇ କଖାରୁ ଲଗି ତିନିରୁ ଚାରିହାତ ଅନ୍ତରରେ ଗୃବ ଅଡ଼ୁ ମାଟି ଟାଣି ଆଣି ଉଚ୍ଚ କରି ଦିଆଯାଏ । ଏଥିରେ ଖତ ମିଶାଇ ମଞ୍ଜି ଲଗାଯାଏ । ଟାଙ୍ଗିମାଟିକୁ ଉଚ୍ଚ କରିବା ଦ୍ୱାରା ଚେର ବଢିବା ଲାଗି ଅଧିକ ସ୍ଥାନ ଏବଂ ଅଧିକ ସାର ଓ ଖାଦ୍ୟ ପାଇପାରେ, ତେଣୁ ଗଛ ଭଲ ଲଟାଏ ଏବଂ କଖାରୁ ବଡ଼ ହୁଏ ।

ବାଲି ଏବଂ ଚଇତାଳି କାଖରୁ ଲାଗି ତିନିହାତ ଅନ୍ତରରେ ମନ୍ଦା ଖୋଳିବ । ସେହି ମନ୍ଦା ମାଟିରେ ଖତ ନଦେଇ ପାଏ ପିଡ଼ିଆ ଫେଣ୍ଟିଦେଇ ସାତ ଆଠଦିନ ଗମିବା ଲାଗି ଛାଡିଦେବ । ମନ୍ଦା ମାଟି ଓଲଟ ପାଲଟ କରି ମଞ୍ଜି ଲଗାଇବ ।

ପ୍ରତି ମନ୍ଦାରେ ତିନି ଚାରୋଟି ମଞ୍ଜି ଲଗାଇ ନଡ଼ା ଘୋଡାଇ ଦେବ । ଗଛ ଉଠିବା ଯାଏ ସାମାନ୍ୟ ପାଣି ଦେବ । ଚାରିପାଞ୍ଚଦିନ ମଧ୍ୟରେ ଗଛ ଫୁଟି ଗଛ ପଦାକୁ ବାହାରି ଆସିଲେ ନଡ଼ା କାଢିଦେବ । ସାତ ଦିନ ମଧ୍ୟରେ ଗଛ ନ ବାହାରିଲେ ଆଉଥରେ ମଞ୍ଜି ଲଗାଇବ ।

**ଏକର ପ୍ରତି ମଞ୍ଜି :**—ଏକର ପ୍ରତି ତିନିସେର ମଞ୍ଜି ଦରକାର ହୁଏ ।

**ଗଛ ଉଠିବା ପରେ ଯତ୍ନ :**—ଗଛ ତିନିରୁ ଚାରି ପତ୍ର ହେବା-ବେଳକୁ "ସୁନାପାଙ୍ଗିରି" ପୋକ ପତ୍ରକୁ ଖାଇ ଯାନ୍ତି । ପ୍ରତିଦିନ ସକାଳୁ ସାମାନ୍ୟ କିରାସିନି ତେଲ ପାଉଁଶ ଗଛଉପରେ ଛିଞ୍ଚିଦେବ ।

**ପାଣିଦେବା:**—କଖାରୁ ଗଛର ପ୍ରସ୍ୱେଦନ କାର୍ଯ୍ୟ ବହୁତ ବେଶୀ । ଲଟାରୁ ଖର୍ଚ୍ଚ ହେଉଥିବା ପାଣି ପୂରଣ ଲାଗି ଖରା ଓ ଶୀତଦିନରେ ପାଣିଦେବ । ଖରାଦିନେ ଲଟା ମାଡ଼ିବା ଲାଗି ପାଣି ଦେଇ ମୂଳ ଥଣ୍ଡା ରଖିବ ।

ନଈପଠା ଏବଂ ପାଳରେ ଦୁଇ ତିନି ଫୁଟ ଗହୀରାରେ ମଞ୍ଜି ଲଗାଯାଇଥାଏ । ଲଟା ମାଡ଼ିବା ସଙ୍ଗେ ସଙ୍ଗେ ମନ୍ଦା ପୋତ ଓଦା ହେଉଥାଏ । ତେଣୁ ପାଣି ଦେବାକୁ ପଡ଼େନାହିଁ । ପାଣି ଅଭାବରେ କଖାରୁ କଷି ଶୁଖି ଝଡ଼ିପଡ଼େ ।

**ପିଡ଼ିଆ ସାର:**—ଖରାଦିନ ଲଗା କଖାରୁ ମନ୍ଦାରେ ପୋଖରୀ ପଙ୍କ ଦିଆଯାଏ । ପଙ୍କ ଶୁଖି ଶୁଖି ରହିଥାଏ । ରଜସଂକ୍ରାନ୍ତି ପୂର୍ବରୁ ଅସରାଏ ବର୍ଷା ହେଲେ ମନ୍ଦା ଖୁସାଇ ମୁଥା ଅନାବନା ଘାସ ଉପାଡ଼ି ଦେବ । ମନ୍ଦାପ୍ରତି ମୁଠାଏ ଖତ, ଅଧପାଏ ପିଡ଼ିଆ ଦେଇ ମାଟି ବହୁତ ମିଶାଇଦେବ । ଆମୋନିୟମ୍ ସଲଫେଟ ଦେଲେ ତାର ଅଧା ହାଡ଼ଗୁଣ୍ଡି ବା ସୁପରଫସ୍‌ଫେଟ ଦେବ ।

"ବଙ୍ଗଳାବାଡ଼ି"ରେ କେବଳ ଖତହିଁ ପ୍ରଧାନ ସାର । ପାଳ ବା ପଠା କଖାରୁ ପିଡ଼ିଆ ଦରକାର କରେନାହିଁ ।

**ଘାସ ଓ ରକ୍ଷା:**—କଖାରୁ ଲଗାଇବା ପୂର୍ବରୁ କ୍ଷେତକୁ ତୋଳି ଅନାବନା ଘାସ ଉପାଡ଼ି ପରିଷ୍କାର ରଖିବ । ଘାସୁଆ କ୍ଷେତରେ କୀଟପତଙ୍ଗ ଆଶ୍ରୟନେଇ ଲଟା ଓ ଫଳ ନଷ୍ଟକରନ୍ତି । ବର୍ଷାଋତୁରେ କଖାରୁ କ୍ଷେତରେ ଗୁବ ପାଞ୍ଚଫୁଟ ଉଚ୍ଚରେ ଘାସ କରିଦେବ ।

ଜଙ୍ଗମାଳରେ ଅଧିବାସୀମାନେ ବଡ଼ ବଡ଼ ଗଛ, ବର କିଂବା ଆମ୍ବଡାଳ ପୋତି ତାହା ଉପରେ କଖାରୁ ମଡାନ୍ତି । କଟକ, ପୁରୀ ଓ ବାଲେଶ୍ୱର ପ୍ରଭୃତି ଜିଲ୍ଲାରେ ଘରଚାଳ ବା ଘର ପିଡାରେ କଖାରୁ ଲଟା ମଡାଇ ଦିଆଯାଏ ।

**ଫୁଲ ଓ କଷି ଧରିବା:**—କଖାରୁ ଲଟା ଉଠେଇବାର ୨୫-୩୦ ଦିନ ପରେ ଗଛରେ ଫୁଲ ଆସେ । ପ୍ରଥମେ ଅଣ୍ଡିରା ଫୁଲ ଫୁଟେ । ୧୦-୧୫ ଦିନ ପରେ ମାଈଫୁଲ ଫୁଟେ । ଅଣ୍ଡିରା ଫୁଲ କଢ ଧରିବା ଦିନରୁ ଫୁଟିବା ଯାଏ ୧୦-୧୨ ଦିନ ଏବଂ ମାଈଫୁଲ କଢ ଧରିବା ଦିନରୁ ଫୁଟିବା ଯାଏ ୭-୮ ଦିନ ଲାଗିଯାଏ ।

କଖାରୁ ଫୁଲ ଭୋର ୮ଟାରୁ ଫୁଟି ଦିନ ପ୍ରହରକ ପର୍ଯ୍ୟନ୍ତ ରହେ । ତାପରେ ଫୁଲ ମଉଳିଯାଏ । ଏହି ଫୁଟିବା ସମୟ ମଧ୍ୟରେ ପରାଗସଙ୍ଗମ ହୁଏ । ଅଣ୍ଡିରା ଓ ମାଈଫୁଲ ମୂଳରେ ମହୁଥାଏ । ଏହି ମହୁ ସଂଗ୍ରହ ବେଳେ କୀଟପତଙ୍ଗର ଗୋଡ଼ରେ ପରାଗରେଣୁ ଲାଗି ପରାଗସଙ୍ଗମ ହୁଏ । ମହୁମାଛି ଏବଂ ପାରୁଡ଼ାପୋକ ଦ୍ୱାରା ପରାଗ ସଙ୍ଗମ ହୁଏ । ଏଥିଲାଗି ଓଡ଼ିଆରେ କହୁଥାନ୍ତି "ଅହେ ରସିକ ! କଖାରୁ ଫୁଲକୁ ପାରୁଡ଼ା ପୋକ ।"

**କଖାରୁ ସାଇତି ରଖିବା:**—ଭୋଗଦେଇ କଖାରୁ ସାଇତି ରଖାଯାଏ । ଲଟା ଶୁଖି ମରିବାପରେ କଖାରୁ ତୋଳାଯାଏ । କଖାରୁ ନାଳି ଘରକଡ଼ରେ ଗୋବର ଦେଇ ଶିକାରେ ଝୁଲାଇ ରଖାଯାଏ ।

## କଖାରୁ ଫସଲର ଶତ୍ରୁ ଓ ରୋଗ

**ସୁନାପାଖିଆ ପୋକ** ( Aulacophora foevicollis ) କଖାରୁ ଗଛ ତିନି ଚାରି ପତ୍ର ହେବାବେଳେ ଏହି ପୋକ ଲାଗେ । ପତ୍ର ଧାରଅଡ଼ୁ ଖାଇ ଛିଣ୍ଡାଇ ପକାଏ । ପତ୍ର ନଷ୍ଟହେବାରୁ ଗଛ ମୋଡ଼ିଯାଇ ମରିଯାଏ ।

ଏହି ପୋକ ମନୁଷ୍ୟ ଆସିବା ମାତ୍ରେ ଉଡ଼ି ପଳାଏ । ଗହିଁଠା ପାଞ୍ଚଶରେ ସାମାନ୍ୟ ଚୂନଗୁଣ୍ଡ ଏବଂ ପଳାଏ କିରାସିନି ମିଶାଇ ବଡ଼ି ସକାଳୁ ଗଛ ଉପରେ ଛିଞ୍ଚିବ । ଗଛପ୍ରତି ତୋଳାଏ ହିସାବରେ 'ଗାମାକ୍ସିନ୍' ଗୁଣ୍ଡ ପକାଇଲେ ଏହିପୋକ ପତ୍ରକୁ ନଷ୍ଟ କରିପାରନ୍ତି ନାହିଁ ।

**ଫଳ-ବିନ୍ଧା କୀଟ:**—କଖାରୁ କଷିକୁ ଏକପ୍ରକାର ପତଙ୍ଗ ଫୁଟେଇ ଅଣ୍ଡା ପାଡ଼େ । ସେହି ଅଣ୍ଡା ଫୁଟି ଗୋଟିପୋକ ବାହାରି କଷିରୁ ରସ ଶୋଷି ନେବାରୁ କଷି ଝଡ଼ିପଡ଼େ । ଗୋଟିପୋକ କଣା କରିବା ସ୍ଥାନରେ ଜୀବାଣୁ ଆଶ୍ରୟ ନେଇ ଫଳକୁ ସଢେଇ ଦିଏ ।

**ପାଳୁଣ୍ଡିଆ ପଡ଼ିବା** ( Mosaic ) ଆଷାଢ଼ ମାସରେ କଖାରୁ ଲଟା ଅଗଅଡ଼କୁ ପତ୍ରଗୁଡ଼ିକ ହଳଦିଆ ଦେଖାଯାଏ । ଅଟିଲା ପତ୍ର ଗୁଡ଼ିକ ଅସ୍ତେ ଅସ୍ତେ ଛୋଟ ଛୋଟ ହୋଇ ବାହାରେ ଏବଂ ଡାଳ ଆଉ ମାଡ଼େନାହିଁ । ଅନେକ ସମୟରେ ଡାଳ ମୋଟା ହୋଇ ହଳଦିଆ ପଡ଼ିଯାଏ ଏବଂ ମୋଡ଼ିଗଲା ପତ୍ର ଦେଖାଯାଏ ।

ଏହା ଏକ ପ୍ରକାର 'ଭାଇରସ୍' ରୋଗ । ଏହା ଏକ-ପ୍ରକାର ଛୋଟଛୋଟ କୀଟଙ୍କଦ୍ୱାରା ଗୋଟାଏ ବେମାରିଆ ଲଟାରୁ ଅନ୍ୟ

ଲତାକୁ ସଞ୍ଚାରିତ ହୁଏ । ଏହି କୀଟଗୁଡ଼ିକୁ ବିନାଶ କରିବା ଦ୍ୱାରା ପାଲୁଣ୍ଡିଆ ରୋଗ ନିରୋଧ କରାଯାଇ ପାରେ । ଏଥିପାଇଁ ଖରାପାଗ ଦେଖି ବୋର୍ଡୋମିକ୍ସ୍ଚର ପିଚକାରୀ ଦେବ ।

**ଛତିଆ ମାରିବା** (Powdery mildew) ଗଛ ବୁଢ଼ାହୋଇ ଆସିବା ବେଳକୁ ପତ୍ର ପାଉଁଶିଆ ମଳିଆ ହୁଏ । ଏହି ପାଉଁଶିଆ ବସ୍ତୁ ଏକ-ପ୍ରକାର ଫିମ୍ପିର କୋରକ ( Spore ) । ଗନ୍ଧକ ଗୁଣ୍ଡ ସରୁ କନା ଖଣ୍ଡିକରେ ପୁଟୁଳା ବାନ୍ଧି ଲତା ପତ୍ର ଉପରେ ଝାଡ଼ିଲେ ମୃତ୍ତୁକୁଗ୍ର-ମଗ୍ନ କମିଯାଏ ।

# ସ୍କ୍ୱାସ

## SQUASH, VEGETABLE MARROW.

Cucurbita maxima.
Cucurbita Pepo.

ସ୍କ୍ୱାସ ଅମେରିକା ଯୁକ୍ତରାଷ୍ଟ୍ରର ଆଦିବାସୀମାନଙ୍କ ଭାଷାରୁ "ଅସ୍କୁଟାସ୍କ୍ୱାସ୍" ( askutas quash ) ରୁ ଉଦ୍ଭବ । ଏହାର ଅର୍ଥ ଏହା କଞ୍ଚାଖିଆ ଫଳ । ସ୍କ୍ୱାସ ପଶ୍ଚିମ ଗୋଲାର୍ଦ୍ଧର ପରିବା । ମକା ଏବଂ ବିନ୍ ପଛକୁ ସ୍କ୍ୱାସ ରେଡ଼ଇଣ୍ଡିଆନ ମାନଙ୍କର ପ୍ରଧାନ ଖାଦ୍ୟଦ୍ରବ୍ୟ । ତେଣୁ ଅମେରିକା ଯୁକ୍ତରାଷ୍ଟ୍ରରେ, ମେକ୍ସିକୋ ଏବଂ ଦକ୍ଷିଣ ଆମେରିକାରେ ବହୁଳ ପରିମାଣରେ ସ୍କ୍ୱାସ ଚାଷ କରାଯାଏ ।

ସ୍କ୍ୱାସ ସାଧାରଣତଃ ଉଷ୍ଣମଣ୍ଡଳ ପରିବା । ଇଂଲଣ୍ଡ ଏବଂ ଉତ୍ତର ୟୁରୋପ ଅଞ୍ଚଳରେ ଏହାର ଚାଷ ଅଳ୍ପ । ଏହି ସବୁ ଅଞ୍ଚଳରେ ସ୍କ୍ୱାସକୁ "ଭେଜିଟେବୁଲ ମାରୋ" ( vegetable marrow ) କୁହାଯାଏ ।

**ପ୍ରକାର :**—ଅନେକ ପ୍ରକାରର ସ୍କାଶ ଦେଖାଯାଏ । ସେଗୁଡ଼ିକୁ ସାଧାରଣତଃ ଗ୍ଟର ଶ୍ରେଣୀରେ ଭାଗ କରାଯାଇଥାଏ ଯଥା :—

୧ । **ରମ୍ଭାଦଳ**— ବଲ୍ଲଭ କଦଳୀ ପରି । ପାଚିଲେ ରଙ୍ଗ ପରି ଦିଶେ ଦେଖାଯାଏ ।

୨ । **ହୁବାର୍ଡଦଳ**—ଫଳ ଅଣ୍ଡା ପରି କିନ୍ତୁ ଅଗଟା ଟୋଙ୍କିଆ ଏବଂ ଅଧିକ ସରୁଣ, ଚୋପା ଶକ୍ତଣ ନଚେତ ଅବୁଅବୁଆ ଓ ସାଦୁରା । ପାଚିଲେ ରଙ୍ଗ ଶାଗୁଆ କିଂବା ଖଇରା ଦେଖାଯାଏ ଏହା ବହୁତ ଦିନଯାଏ ସାଇତି ରଖି ହୁଏ ।

୩ ।**ଠେକାଦଳ**—ଫଳ ମୁଣ୍ଡବନ୍ଧା ଠେକାପରି ଦେଖାଯାଏ ଚୋପା ମୋଟା ଅଜ ଟାଣ । ଯଥା,-ଭିକ୍ଟର ଏବଂ ବାରେନ୍ ।

୪ । **ଯକ୍ଷଦଳ**—କଖାରୁ ପରି ଥାକୁଲ ଏବଂ ମଝିରେ ପର୍ଯ୍ୟନ୍ତ ଓଜନରେ ଜଡ଼ଠ । ଏହାକୁ ଚେକ ଚେକ କରି କାଟି ସାଇତି ରଖାଯାଏ ।

ବୋଇତି କଖାରୁ ( pumpkin ) ଠାରୁ ସ୍କାଶ ଜଦା । ବୋଇତି କଖାରୁରେ ଶତକଡ଼ା ସାତଭାଗ ଜଦା ମାଲ୍ ଥିବାବେଳେ, ସ୍କାଶରେ ଶତକଡା କୋଡ଼ିଏ ଭାଗ ଜଦା ମାଲ୍ ଥାଏ ।

**ଜନ୍ମସ୍ଥାନ :**—ଏହି ଚାରିଟି ଦଳର ସ୍କାଶ ସାଧାରଣତଃ ତିନୋଟି ବର୍ଗର ଅନ୍ତର୍ଗତ ।

୧— **ମାକ୍ସିମା ବର୍ଗ** ( cucurbita maxima ) ଯଥା—ହୁବାର୍ଡ,ମାର୍ବଲ୍ ହେଡ,ଟର୍କ ଟର୍ବାନ୍ । ଦକ୍ଷିଣ ଆମେରିକାର ଆଣ୍ଡିଜ ପର୍ବତ ଓ ଅର୍ଜେଣ୍ଟାଇନା ପ୍ରଦେଶର ଉତ୍ତର ଅଞ୍ଚଳ ଏହି ଉପବର୍ଗ ଫଳ ଗୁଡ଼ିକର ଜନ୍ମସ୍ଥାନ ।

**୨-ମସ୍କାଟା ବର୍ଗ** ( cucurbita moschata ) କୁଶାଓ, କୁକନେକ୍, ଜାପାନିଜ ପାଇ, ଚିଜ୍ ପମ୍ପକିନ୍ ଏହି ବର୍ଗର ଅନ୍ତର୍ଗତ । ଏହି ସ୍କ୍ୱାଶଗୁଡ଼ିକ ବହୁତ ଲଟାନ୍ତି । ମେକ୍ସିକୋ ଓ ମଧ୍ୟ ଅମେରିକା ଏମାନଙ୍କର ଜନ୍ମସ୍ଥାନ ।

**୩-ପେପୋ ବର୍ଗ** ( cucurbita pepo ) ଫଳଗୁଡ଼ିକ ଛୋଟ । ଗଛ ସାମାନ୍ୟ ଲଟାଏ ଏବଂ ଶୀଘ୍ର ଫୁଲ ଫୁଟାଇ ଫଳ ଧରେ । ଏହି ବର୍ଗର ସ୍କ୍ୱାଶ ଗୁଡ଼ିକ "ଗ୍ରୀଷ୍ମକାଳୀନ ସ୍କ୍ୱାଶ" କୁହାଯାଏ । ମେକ୍ସିକୋ ଓ ମଧ୍ୟ ଅମେରିକା ଏହି ବର୍ଗର ଉଦ୍ଭବ ସ୍ଥାନ !

ଅମେରିକାରେ "ପମ୍ପକିନ୍ ପାଇ" ( pumpkin pie ନାମକ ଏକପ୍ରକାର ଖାଦ୍ୟସାମଗ୍ରୀ ଏହି ସ୍କ୍ୱାଶରୁ ତିଆରି ହୁଏ ।

**ଚାଷ** :—ଅମେରିକାରେ ଶୀତଋତୁ ଶେଷ ଅଡ଼କୁ କାଚଘରେ କାଗଜ ଟୋପାରେ ମଞ୍ଜି ପୋତି ଚାରା ଉଠାଯାଏ । ବରଫ ତରଳି ବୈଶାଖ ବେଳକୁ ଖରା ଟାଣ ହୋଇ ଆସିଲେ ଜମି ଗୁଣ୍ଡ କରାଯାଇ ଛଅଫୁଟ ଅନ୍ତରରେ ଚାରା ଲଗାଯାଏ ।

---

"Long before — frost is on the pumpkins" "Summer squash is harvested"— Our vegetable Travellers by victor R. Boswell. The National Geographic Magazine VCVI, N.o. 2, Aug 1949 P.P. 144-217

# ପାଣି କଖାରୁ

## ( କୁଷ୍ମାଣ୍ଡ, କାଶୀଫଳ, ଛାଚକୁମୁଡ଼ା, କର୍କାରୁ )

## ASH PUMPKIN, WHITE GOURD

### CHINESE MELON
### BENINCASA CERIFERA
### N. O. CUCURBITACEAE

ଜାପାନ ଏବଂ ଜାଭା ଦ୍ୱୀପ ପାଣିକଖାରୁର ଆଦି ଜନ୍ମସ୍ଥାନ । ମାତ୍ର ଏସିଆ ମହାଦେଶରେ ସର୍ବତ୍ର ପାଣିକଖାରୁ ଚାଷ କରାଯାଏ । ଅଫ୍ରିକା ମହାଦେଶରେ ମଧ୍ୟ ସାମାନ୍ୟ ପରିମାଣରେ ଚାଷକରାଯାଇ-ଥାଏ । ଲଟା ସରୁଆ ବୋଇତି କଖାରୁପରି ଗୁଡ଼ାଏ ଲଟାଏ ନାହିଁ । ଅଳ୍ପ ଗଣ୍ଠି ଛାଡ଼ି ଶାଖା ପ୍ରଶାଖା ବାହାରିଥାଏ । ପତ୍ର ୪ ରୁ ୭ ଇଞ୍ଚ ଲମ୍ବା । ପତ୍ରରେ କଣ୍ଟା ନ ଥାଏ, କିନ୍ତୁ ଲୋମରେ ପରିପୂର୍ଣ୍ଣ । ଫୁଲ ଫିକା ହଳଦିଆ ଏବଂ ଥାଳିଆ ପରି । ଅଣ୍ଡିରି ଫୁଲର ନାସି ବଡ଼, ମାଈ ଫୁଲର ନାସି ନ ଥାଏ, ଥିଲେ ସାମାନ୍ୟ ଲମ୍ବା ।

**ଫଳ:**—ମୃଦଙ୍ଗ ପରି ଏକଫୁଟରୁ ଦେଢ଼ ଫୁଟ ଲମ୍ବ । ଫଳ ବଢ଼ିବା ବେଳେ ଉପରଟାଯାକ ଲୋମରେ ପରିପୂର୍ଣ୍ଣ ଥାଏ କିନ୍ତୁ ପାଚିଲା ହେବା ବେଳକୁ ଲୋମ ପରିବର୍ତ୍ତେ ଧଳା ମହଣ ଗୁଣ୍ଡରେ ବୋଳି-ହୋଇ ରହେ । ଶସ ଧଳା ଏବଂ ଚନା ଧାଡ଼ି ମଞ୍ଜି ରହିଥାଏ ।

**ମାଟି:**—ପାଣିକଖାରୁ ବଳୁଆ ମାଟି ଦରକାର କରେ । ବର୍ଷା ଦିନରେ ଖତୁଆ ମାଟି ଏବଂ ଖରା ଦିନରେ ପଟୁପଡ଼ା ନଈକୂଳିଆ ମାଟିରେ ଏହି ଫସଲ ଭଲହୁଏ । ବାଲେଶ୍ୱର ଜିଲ୍ଲାର ସୁନନଦୀ କୂଳରେ ରେମୁଣା ଓ ଫୁଲବାଡ଼ି ଅଞ୍ଚଳରେ ନଦୀ ବଢ଼ି ଛାଡ଼ିଯିବା ପରେ ପାଣିକଖାରୁ ବହୁ ପରିମାଣରେ ଚାଷ କରାଯାଏ ।

**ଲଗାଇବା :**—ମନ୍ଦା ଖୋଳି ପୁରୁଣା ଗୋବର ଖତ ମିଶାଇ ମାଟି ତିଆରି କରିବ । ବୈଶାଖ ଆଷାଢ଼ରେ ନଚେତ୍ କାର୍ତ୍ତିକ ମାସରେ ଖତଥିବା ସ୍ଥାନରେ ମଞ୍ଜିକୁ ଗଛ କରାଇ ସେଠାରୁ ଗୁଡ଼ିଗଛ ଲଗାଯାଇ-ଥାଏ । ପ୍ରତି ମନ୍ଦାରେ ୩ଟି ମଞ୍ଜି ଲଗାଯାଏ । ଗଛ ଉଠିଲେ ମନ୍ଦାପ୍ରତି ଗୋଟିଏ ଗଛ ରଖାଯାଏ ।

**ଏକର ପ୍ରତି ମଞ୍ଜି :**— ଏକର ପ୍ରତି ଦୁଇସେର ମଞ୍ଜି ଦରକାର ହୁଏ ।

**ପରବର୍ତ୍ତୀ କାର୍ଯ୍ୟ :**— ଡଙ୍କ ଲମ୍ବିଲେ ରଞ୍ଜାରେ ବା ଘରଚାଳରେ ମଡ଼ାଇବ । ନଦୀ ପଠା ଓ ପାଳରେ ଲଟା ଛାଡ଼ିଲେ ମାଡ଼େ । ଲଟାର ଗୁଡ଼ିପାଖ ପରିଷ୍କାର ରଖିବ ।

ପାଣିକଖାରୁ ଥଣ୍ଡା ଜାଗାରେ ଭଲ ହୁଏ ନାହିଁ । ଖରା ପାଉଥିବା ସ୍ଥାନରେ ଏହାକୁ ଲଗାଇବା ଭଲ ।

**ପାଣିକଖାରୁ ବ୍ୟବହାର :**— କଞ୍ଚି ପାଣିକଖାରୁ ତୋରଣ ବା ତରକାରି ଦେଇ ରନ୍ଧାଯାଏ । କିନ୍ତୁ କଞ୍ଚି ପାଣିକଖାରୁ ସେତେ ସ୍ୱାଦୁକର ନୁହେଁ । ପ୍ରବାଦ ମଧ୍ୟ ଅଛି ଯେ "କୁଷ୍ମାଣ୍ଡଂ କୋମଳଂ ବିଷଂ; ବାର୍ତ୍ତାକୀ କୋମଳଂ ପଥ୍ୟଂ ।" ଗଛ ପାକଳ ହୋଇ ଲଟା ଶୁଖିଯିବା ପରେ ତୋଳା ପାଣିକଖାରୁ ଖାଦ୍ୟ ଏବଂ ଅମ୍ବିଳ ନିମନ୍ତେ ଉତ୍କୃଷ୍ଟ ।

**କଖାରୁ ବଡ଼ି :**— ପାକଳ ପାଣି କଖାରୁକୁ କଟାଯାଇ ଭିତର ତୋରଣ ପାଣି ଅଂଶ ଭଲ ଭାବରେ ଚିପୁଡ଼ି ବାହାର କରିଦେବା ପରେ ବିରି ସହିତ ବଟାଯାଏ । ବଟା ବିରିକୁ ଫେଣ୍ଟିବା ପରେ ମଣ୍ଡା ପରି ବଡ଼ି ତିଆରି କରାଯାଏ । ବଡ଼ି ଶୁଖିଗଲେ ଧଳା ଦେଖାଯାଏ । ଏହା ଅତି ହାଲୁକା ଏବଂ ହାତରେ ସାମାନ୍ୟ ମଳି ଦେଲେ ଚୂନା

ହୋଇଯାଏ । ଦେଖିବାକୁ ସୁନ୍ଦର ହେଲେ ସୁଦ୍ଧା ତାର ଶ୍ରେ
ନ ଥିବା ହେତୁ ବ୍ୟଙ୍ଗରେ "ଦେଖନ୍ତେ ସୁନ୍ଦର କଖାରୁ ବଢ଼ି"
ବୋଲି କୁହାଯାଇ ଥାଏ ।



**WHITE BOTTLE GOURD, CALABASH GOURD.**
**UTENSIL GOURD | PARAGUAY, SGUTH AMERICA**
**LAGENARIA VULGARIS**
**LAGENARIA**
**N. O. CUCURBITACEÆ**

ଲାଉ ଭାରତ ବର୍ଷ, ଅବସିନିଅ ଏବଂ ମୋଲୁକାସ
ଦ୍ୱୀପରେ ବଣୁଆ ଭାବରେ ଦେଖାଯାଏ । ଲଟା କୋମଳ ଏବଂ
ମଧୁର କସ୍ତୁରୀ ବାସ ଯୁକ୍ତ । ପତ୍ର ବଡ ବଡ଼ । ୭ଇଞ୍ଚରୁ ୧୨ଇଞ୍ଚ
ଚଉଡ଼ା, କୋମଳ ଏବଂ ପ୍ରାୟ ଗୋଲାକାର ଛିଦ୍ର ଶୂନ୍ୟ । ଅଙ୍କର୍ଷି
ଦୁଇଭାଗରେ ବିଭକ୍ତ ।

**ଫୁଲ**—ଧଳା, ଅଣ୍ଡିରାଫୁଲ ନାସି ବହୁତ ଲମ୍ବା; କିନ୍ତୁ ମାଈଫୁଲ
ନାସି ଅପେକ୍ଷାକୃତ ଛୋଟ । ଫଳ ଚଢିବା ସହିତ ଏହି ନାସି ବଢେ
ଏବଂ ପାଚିଲ ହେବା ବେଳକୁ ବହୁତ ଚେମଡା ଧରେ ।

**ଫଳ**—ତିନି ଇଞ୍ଚରୁ ତିନିଫୁଟ ପର୍ଯ୍ୟନ୍ତ ଲମ୍ବା ହୁଏ । କଅଁଳ ଥିବା-
ବେଳେ ଖୋଳପା ନରମ ଓ ଶସ କୋମଳ ଥାଏ ଏବଂ ଖାଇବାକୁ
ମଧ୍ୟ କୋମଳ । ପାଚିଲ ହୋଇଗଲେ ଖୋଳପା ଟାଣ ଧରେ ଏବଂ
ଶସ ଶୋଲପରି ହୋଇ ସିଝେନାହିଁ ।

**ଗୁଣ :**—ଲାଉ ମୃଦୁ ବିରେଚକ । ତେଣୁ କୋଷ୍ଠ ପରିଷ୍କାରକ ।
ଲାଉ ମଞ୍ଜି ତେଲ ଔଷଧରେ ବ୍ୟବହାର ହୁଏ ।

**ପ୍ରକାର** :—ତିନିପ୍ରକାର ଲାଉ ଦେଖାଯାଏ,ଯଥା:—

୧ । **ଥାଳ ବା ଗୋଠ ଲାଉ**—ଲାଉ ଗୋଲକାର ବା ବର୍ତ୍ତୁଳ ।

୨ । **ଝିଙ୍କିଆ ଲାଉ**—ଲାଉ ପ୍ରାୟ ତିନିଫୁଟ ପର୍ଯ୍ୟନ୍ତ ଲମ୍ବ ହୁଏ ।

୩ । **ତୁମ୍ବା**—ଲାଉ ମୂଳରୁ ସରୁ ହୋଇ ଅଗରୁ ଗୋଲ । ପାଚିଲେ ହୋଇଗଲେ ଏହାର ମୂଳଅଡ଼କୁ କାଟି ଥାଳ କରନ୍ତି । ଏହା କେବା ଡାଲ ପର କାର୍ଯ୍ୟରେ । ଅଦିବାସୀମାନେ ଏହି ଥାଳରେ ପେଜ, ମାଣ୍ଡିଆଯାଉ, ପାଣି ଓ ମଦ ପ୍ରଭୃତି ରଖନ୍ତି । ତୁମ୍ବା ଲାଉ ଭଙ୍କ ଏବଂ ପତ୍ରକଷା; ତେଣୁ ଖାଇବା ଯୋଗ୍ୟ ନୁହେଁ । ଏହିଗଛ ବର୍ଷା ପୂର୍ବରୁ ଉଠି ବର୍ଷାଋତୁ ଶେଷକୁ ଫଳଯାଏ ଏବଂ ଶୀତଋତୁ ପୂର୍ବରୁ ଲଟା ମରିଯାଏ ।

**ମଞ୍ଜି ଲଗାଇବା**:—ରାତିରେ ଲାଉ ମଞ୍ଜିକୁ ପାଣିରେ ପକେଇ ରଖିବ । ସକାଳୁ ପାଣି ନିଗାଡ଼ିଦେଇ ଓଦା ଖଣ୍ଡିକରେ ପାଞ୍ଚଛଅ ଘଣ୍ଟା ଗଡେଇ ରଖିବ । ଉପରବେଳା ମନ୍ଦାଟିରେ ଦୁଇତିନିଟି ମଞ୍ଜି ଲଗାଇବ ।

ଏକର ପ୍ରତି ସେ ୪ର ରୁ ସେ ୫ ର ମଞ୍ଜି ଦରକାର ହୁଏ ।

**ଭାଡ଼.**—ଲାଉ ତଳେ ମାଡ଼ିବା ଠାରୁ ପିଢାରେ ବା ଭାଡ଼ରେ ମାଡ଼ିଲେ ଭଲ ଫଳେ । ଗଛ ଡ଼ଙ୍କେଇବାକୁ ଆରମ୍ଭ କଲେ ପିଢା ଉପରେ ନଚେତ୍ ଭାଡ଼କର ଲଉକୁ ଲଟାଇବାକୁ ଦେବ ।

**ପାଣି**:—ଲାଉ ପତ୍ର ଏବଂ ଲଟାରେ ଜଳୀୟ ଅଂଶ ଅଧିକ । ତେଣୁ ଲାଉ ଓଦା ବାୟୁରେ ଭଲବଢେ । ଏଥିଲାଗି ଲାଉକୁ ପୋଖରୀ କୂଳରେ ଲଗାନ୍ତି କିଂବା ପାଣି ଉପରେ ଭାଡ଼କର ଲାଉ ମଡାଇ-ଥାନ୍ତି । ପାଣି ପାଖରେ ନ ଥିଲେ ଲାଉ ଭାଡ଼ ତଳେ ଦୁଇ ତିନୋଟା ବଡ଼ହାଣ୍ଡି ବା କନ୍ଦଅରେ ପାଣି ଭରି ରଖିଦେବ ।

ଗୁଣ୍ଡୁଲଧୂଆ ପାଣି, ବାସିପେଜ ଏବଂ ଘାତରନ୍ଧା ହାଣ୍ଡି ଧୂଆ କଳା ପାଣି ଲାଉ ଗଛର ପ୍ରଧାନ ସାର । ଏହି ତିନିଟିରୁ

ପ୍ରତଦନ ଗୋଟିଏ ଦେଉଥିଲେ ଗଛ ସତେଜ ରହି ବଢେ ।

**ଲାଉ ଫଳବା :**—କାର୍ତ୍ତିକ ମାସରୁ ଚୈତ୍ର ମାସ ଶେଷ ପର୍ଯ୍ୟନ୍ତ ଲାଉ ଫଳେ । ବର୍ଷାଦିନଆ ଲାଉ ଶୀତଦିନଆ ଲାଉଠାରୁ ମଧୁର । ଲାଉଡ଼ଙ୍କ ଏବଂ ଶାଗ ଖାଇବାକୁ ମସିଆ ଲାଗେ ।

## ରୋଗ ଓ ଶତ୍ରୁ

**ସବାଳୁଅ ପୋକ**—(sphenar clius caffer Z.)ଏକପ୍ରକାର ସିଁବାଳୁଅ ପୋକ ଲାଉ ଲହାରପତ୍ର ଖାଇଯାଏ । ଏହି ପୋକକୁ ଧରି କାରୁସିନ ତେଲରେ ପକାଇ ମାରିବ, ନଚେତ୍ "ଲେଡ୍ ଅର୍ସେନେଟ୍" ଔଷଧ ସିଞ୍ଚାଇ ଦେବ । ଏହି ଔଷଧ ବିଷାକ୍ତ, ତେଣୁ ଲାଉ ଫଳ ଉପରେ ଯେପରି ନ ପଡ଼େ ।

**କଡ଼ଲାଉ :**— ବୁଡ଼ା ପାକଳ ଲାଉର ନାସି ପାଖ ମଞ୍ଜି ଧରିବ । ଏହି ମଞ୍ଜିର ଗଛ ଲହେଇବା ପରେ ସାତ ଥର ଶାଖା ପ୍ରଶାଖା ଗୁଡ଼ିକର ଅଗ ଚିମ୍ପି ଦେବ ।

---

—ତୃତୀୟ ପରିଚ୍ଛେଦ—

# ଜହ୍ନୀ ଜାତୀୟ ଫସଲ

## (RAG GOURD)
## LUFFA

ଏସିଆ ମହାଦେଶ ଜହ୍ନୀର ଜନ୍ମସ୍ଥାନ । ଏହି ଜାତୀୟ ସମସ୍ତ ଉଦ୍ଭିଦ ଲହେଇ ବଢନ୍ତି । ସମସ୍ତଙ୍କର ଜୀବନ କାଳ ପ୍ରାୟ ଏକ ବର୍ଷ । ଏହାର ଲହା ସବୁଅ, ପତ୍ର ଖାସଖାସିଆ । ଫୁଲ ଧଳା ନଚେତ୍ ହଳଦିଆ । ଅଣ୍ଡିରି ଫୁଲ ୩-୪ଟି ଗୋଟିଏ ଡେମ୍ଫରେ ଧରେ । ପ୍ରତ୍ୟେକ ଅଣ୍ଡିରି ଫୁଲର ମଞ୍ଜୁରୀଦଣ୍ଡ ଲମ୍ବା । ମାଈଫୁଲ ଗୋଟିକିଆ ରହିଥାଏ ।

ଓଡ଼ିଶାର ସମସ୍ତ ଅଞ୍ଚଳରେ ଜହ୍ନୀ ଚାଷ କରାଯାଏ । ଏହା ଶୀମଫଳ ଏକ ଜାତୀୟ ଫସଲ । ଜହ୍ନୀ ଏତେ ପ୍ରିୟ ଫସଲ ଯେ ତାହା ସହିତରେ ଅନେକ ଜିନିଷର ତୁଳନା କରାଯାଏ । ଶୁଭ୍ର ଚନ୍ଦ୍ର କିରଣକୁ ଜହ୍ନୀଫୁଲ ସହିତ ତୁଳନା କରାଯାଏ । "ଜହ୍ନୀଫୁଲ ପରି ଜହ୍ନ ଫୁଟିଛି ।" ପଲ୍ଲୀଗ୍ରାମ ମାନଙ୍କରେ "ଜହ୍ନୀଓଷା" କରାଯାଏ । ଅବିବାହିତା ବାଳିକାମାନେ ଖୁଦୁରୁକୁଣୀ ଓଷାପରେ ଭାଦ୍ର ପୂର୍ଣ୍ଣିମାଠାରୁ କୁଆଁରପୂନେଇ ପର୍ଯ୍ୟନ୍ତ ଏହିଓଷା ପାଳନ୍ତି । ସନ୍ଧ୍ୟାବେଳେ ଜହ୍ନୀଫୁଲ ତୋଳି ତିନୋଟି ମଣ୍ଡଳ କାଟି ତିନୋଟି ଜହ୍ନୀ ପତ୍ରରେ ଫୁଲ ରଖି ନିଜ ନିଜର ଭାଇ ବାପାଙ୍କ ମଙ୍ଗଳ କାମନାରେ ତାକୁ ଘର ଉପରକୁ ଫୋପାଡ଼ନ୍ତି ।

"ଜହ୍ନୀ ଜହ୍ନୀ ଅଞ୍ଜୁଳି; ନିତ ପଡ଼େ ତନି ଅଞ୍ଜୁଳି
ଦୋଳରେ ଯାଏ, ଦୋଳରେ ଆସେ
ଚେକା ପିଡା ଖଣ୍ଡେ ବାଉଁଶ ବସେ"

( ପୂର୍ଣ୍ଣଚନ୍ଦ୍ର ଭାଷାକୋଷ )

ଜହ୍ନୀ ବର୍ଗରୁ ଦୁଇଟି ଫସଲ ଖାଦ୍ୟ ନିମନ୍ତେ ଚାଷ କରାଯାଏ । ଯଥା:—(୧) ଜହ୍ନୀ ଏବଂ (୨) ତୋରଡ଼ା । ଦୁଇଟି ଜାତିର ଭିତର କଷି ଅବସ୍ଥାରେ କୋମଳ ଶସରେ ଭରି ରହିଥାଏ । ଏହି କୋମଳ ଶସ ସେଲ୍‌ଲୋଜ ଉପାଦାନରେ ଗଢା । ଜହ୍ନୀ ଏବଂ ତୋରଡ଼ା ପାକଳ ହୋଇଗଲେ ଏହି ସେଲ୍‌ଲୋଜ ଗୁଡ଼ିକ କପା ତୁଳା ଖିଅ ପରି ବାଲ ହୋଇ ଜାଲ ପରି ରହେ । ସେହି ଖିଅ ଗୁଡ଼ିକ ମଧ୍ୟ ତୁଳା ଖିଅ ପରି ଟାଣ ହୋଇଥାଏ । ସେହି ଜାଲ ତଳିଲିଅ ରୂପେ ବ୍ୟବହାର କରାଯାଏ ।

ଜହ୍ନୀ ଓ ତୋରଡ଼ା ମଧ୍ୟରେ ନିମ୍ନଲିଖିତ ପ୍ରଭେଦ ଦେଖାଯାଏ ।

| ଗଛର ବିଭିନ୍ନ ଅଙ୍ଗ | ଜହ୍ନୀ | ତୋରଡ଼ା |
|---|---|---|
| ମଞ୍ଜି | କଳା, ଚିକ୍କଣ, ମୁଣ୍ଡପାଖ ଗୋଳିଆ ଏବଂ ଉପରଠାଯାକ ଛୁଞ୍ଚି ଛୁପି ଦାଗ ଥାଏ । | ପାଣ୍ଡ୍ରିଆ, ରୁକ୍ଷ ଏବଂ ମୁଣ୍ଡ ପାଖ ଚଉଡ଼ା । |
| ପତ୍ର | ଖାଲୁଆ; ଉପର ପାଖ ଚିକ୍କଣ କିନ୍ତୁ ତଳ ପାଖ ଖା ସ ଖା ସୁ ଆ । ଧାର ଟୋଲ୍ ପତ୍ରର ଶିରପ୍ରଶିରା ଗୁଡ଼ିକ ଫଳର ଦେହରେ ମିଶି ରହିଥାଏ । | ଗାଢ ନୀଳ ବା କଳା ମଚ ମଚ । ଉପରପାଖ ଖାସ ଖାସୁଆ ଏବଂ ତଳପାଖ ଚିକ୍କଣ । ଧାର କରତ ଧାର ପରି । ଶିରା ପ୍ରଶିରା ଗୁଡ଼ିକ ଫଳର ଭିତରେ ପଶି ଯାଇଥିବା ପରି ଦେଖାଯାଏ |
| ଫୁଲ | ଅଣ୍ଡିରି ଫୁଲ ଛୋଟ ଏବଂ ଗାଢ ହଳଦିଆ । | ଅଣ୍ଡିରି ଫୁଲ ଖୁବ୍ ବଡ଼ ଏବଂ ଶୁଭ୍ର ହଳଦିଆ । |
| ଫଳ | ଜହ୍ନୀ ଉପରେ ୧୦ଟି ଶିରା ଉଚ୍ଚା ହୋଇ ରହିଥାଏ । ଫଳରୁ ଏକପ୍ରକାର ସୁବାସ ବାହାରେ । | ଫଳ ଗୋଠାଳିଆ ଓ ଚିକ୍କଣ । ୧୦ଟି ଶିରା ନଥାଇ ଗାର ପରି ରହିଥାଏ । |

## ଜହ୍ନୀ

( ଶାନ୍ତାଳ- ପଟେଖର ଝିଙ୍ଗା; ହିନ୍ଦି- ତୋରେଇ; ସଂସ୍କୃତ-ଝିଙ୍ଗିକା )

Luffa acutangula

**ପ୍ରକାର:—** ଦୁଇ ପ୍ରକାର ଜହ୍ନୀ ଅଛି—(୧) ସାତପତ୍ତୁରି ବା ଖରଟିଆ (୨) କାଦୁଆ ବା ବର୍ଷାଦିନିଆ । ସାତପତ୍ତୁରି ଜହ୍ନୀ ପେନ୍ଥା

ପେନ୍ଥା ହୋଇ ଫଳେ । ଗୋଟାଏ ପେନ୍ଥାରେ ୫-୭ଟା ଜହ୍ନି ଥାଏ । ଏହି ଜହ୍ନି ଗୁଡ଼ିକ ଦଶ ବାର ଇଞ୍ଚ ଲମ୍ବ । ବର୍ଷାଦିନିଆ ଜହ୍ନି ପ୍ରଚୁର ପରିମାଣରେ । ଖାଣି ଧାଡ଼ିଥିବାରୁ ବହୁତ ଲଟାଏ । ଏ ଜହ୍ନିଗୁଡ଼ିକ ପ୍ରାୟ ଦୁଇଫୁଟରୁ ଅଧିକ ଲମ୍ବା ହୁଏ । ହାତିଆ ଜହ୍ନି ବୋଲି ଏକପ୍ରକାର ଜହ୍ନି ଅଛି । ଏହା ପ୍ରାୟ ହାତେ ପର୍ଯ୍ୟନ୍ତ ଲମ୍ବ ଏବଂ ବର୍ଷା ଦିନରେ ଫଳେ ।

**ଲଗାଇବା ସମୟ:—** ସାତପୁରିଆ ଜହ୍ନି କାର୍ତ୍ତିକ ମାସରୁ ମାଘମାସ ଶେଷ ପର୍ଯ୍ୟନ୍ତ ଏବଂ ଭାଦୁଅ ଓ ହାତିଆ ଜହ୍ନି ଜ୍ୟେଷ୍ଠ ଶେଷ ବା ପହିଲ ଆଷାଢ଼ରେ ଲଗାଯାଏ ।

**ଲଗାଇବା ପ୍ରଣାଳୀ:—** ସାତପୁରିଆ ଜହ୍ନି ଲାଗି ଚାରିଫୁଟରେ ଛଅ ଫୁଟ ଏବଂ ଭାଦୁଅ ଜହ୍ନି ପାଇଁ ଛଅ ଫୁଟରେ ଅଠ ଫୁଟ ମନ୍ଦା ଖୋଳି ଲଗାଇବ । ହାତେ ଚଉଡ଼ା ଓ ଗୋଲେଇ ମନ୍ଦା ଖୋଳି ଗୋବର ଖତ, ପିଡ଼ିଆ ପେଣ୍ଡି ଦେଇ ମଞ୍ଜି ଲଗାଇବ । ମଞ୍ଜି ଲଗାଇବା ପୂର୍ବରୁ ଦିନେ ମଞ୍ଜିକୁ ପାଣିରେ ପକାଇବ । ପାଣିରୁ ଆଣି ଅଳ୍ପ ଖରାରେ ଦୁଇଘଣ୍ଟା ଶୁଖାଇ କନା ଖଣ୍ଡିକରେ ପୁଟୁଳା ବାନ୍ଧିଦେବ । ତହିଁ ଆରଦିନ ମଞ୍ଜି ଲଗାଇବ ।

ମନ୍ଦାପ୍ରତି ତିନିଚାରିଟି ମଞ୍ଜି ଲଗାଇବ । ଏକଛଟାକି ମଞ୍ଜିରେ ୧୨୦ଟି ପର୍ଯ୍ୟନ୍ତ ମନ୍ଦା ଲାଗିଥାଏ । ଏକର ପ୍ରତି ଦୁଇତିନି ସେର ଜହ୍ନି ମଞ୍ଜି ଦରକାର ।

ମଞ୍ଜି ଲଗାଇ ମନ୍ଦାକୁ ପାଳରେ ଘୋଡାଇ ଦେବ । ମନ୍ଦାର ତାତ ଦେଖି ପ୍ରତିଦିନ ବା ଦିନେ ଛାଡ଼ି ଦିନେ ପାଣିଦେବ । ମଞ୍ଜି ଲାଗିବାର ୫-୬ ଦିନ ପରେ ଗଛ ଉଠେ ।

**ଖୁସାକୋଡ଼ା ଓ ରଞ୍ଜା ଦେବା :—** ଗଛ ଡ଼େଙ୍ଗିବା ଆରମ୍ଭ ହେଲେ ମଞ୍ଜିକୁ ଖୁସାଇ ମୁଥାମୂଳ ଓ ଅନାବନା ଘାସ ବାଛି ଦେବ । ଶିଘ୍ରଟିଆ ଇଞ୍ଚିରି ଫଳେ ମାଡ଼ୁଥାଏ । ବର୍ଷାଦିନିଆ ଇଞ୍ଚିରିକୁ ଟଙ୍କାଳିଆ ରଞ୍ଜା ପୋତ ତାହା ଉପରେ ମଡ଼ାଇବ । ଫଳେ ମାଡ଼ିଲେ ଅନାବନା ଘାସ ବଢ଼ି ଇଞ୍ଚିରି ଗଛକୁ ମାଡ଼ି ଦେବ ।

**ଜହ୍ନି ଫଳିବା ଓ ଆମଦାନି :—** ଇଞ୍ଚିରି ଲଗାଯିବାର ୪୦ ଦିନ ପରେ ଗଛରେ ଫୁଲ ଫୁଟେ । ଅଣ୍ଡିରା ଫୁଲ ଆଗେ ଫୁଟେ । ସାଧାରଣତଃ ଉପରବେଳା ସୁବଟା ପରେ ଅଣ୍ଡିରା ଫୁଲଗୁଡ଼ିକ ଫୁଟେ । ପିଲାମାନେ ସେହି ଅଣ୍ଡିରା ଫୁଲକୁ ତୋଳି ଖେଳନ୍ତି ।

"ଇଞ୍ଚିରି ଫୁଲ ଠୋ'ଠା, ଗୁଟିଆ ଦୁଷା କହୁଥାଇଛି ଗୁଜୁଳ ମୁଠିଏ ରଖିଥା ।"

ସନ୍ଧ୍ୟାବେଳେ ଫୁଟି ସକାଳକୁ ଫୁଲ ମଉଳି ପଡ଼େ । ଏଥିପାଇଁ ଲୋକେ କହୁଥାନ୍ତି;—

"ଇଞ୍ଚିରି ଫୁଲ ପରି ଅସୂତ ପାଥ
ସଞ୍ଜେ ଫୁଟି ସକାଳେ ଯାଅ"

ମାଈଫୁଲ ବଡ଼ ସକାଳୁ ଫୁଟେ । ଭଅଁରା ଓ ପିମ୍ପୁଡ଼ି ପ୍ରଭୃତି କୀଟପତଙ୍ଗ ଦ୍ୱାରା ପରାଗ ସଙ୍ଗମ ହୁଏ । ଖରାଟିକ ଗାଢ଼ିଆ ବେଳକୁ ଫୁଲ ମଉଳି ପଡ଼େ ।

ଫୁଲ ଝଡ଼ି ପଡ଼ିବାର ୭-୮ ଦିନ ପରେ ଇଞ୍ଚିରି ତୋଳା ଯାଏ । କେତେକ ଇଞ୍ଚିରି ପେଣ୍ଡି ପେଣ୍ଡି ହୋଇ ଫଳେ, କେତେକ ଗୋଟାଏ ଗୋଟାଏ ହୋଇ ଫଳେ । ଇଞ୍ଚିରି ସୁଣ୍ଡେରୁ ଫୁଟେ ପର୍ଯ୍ୟନ୍ତ ଲମ୍ବ ହୁଏ । କେତେକ ଇଞ୍ଚିରି ୩-୪ ଅଙ୍ଗୁଳି ଲମ୍ବା ହୋଇ ହାତ ମୁଠା ପରି ମୋଟା ହୁଏ ।

ଏକର ପ୍ରତି ୮୦-୧୦୦ ମହଣ ଜହ୍ନି ମିଳେ ।

**ପିତା ଜହ୍ନୀ:—** ଛୋଟେଛୋଟ ଲଟାର ଜହ୍ନୀ ପିତା ଲାଗେ । ଲଟାରେ ଚେର ଖପରୁ ଉପରେ ଚଢ଼ିବାରୁ ଜହ୍ନୀ ପିତା ଲାଗେ ବୋଲି ଲୋକଙ୍କର ଧାରଣା । ପିତା ଜହ୍ନୀ ଲଟା ଉପାଡ଼ି ଦେବ ।

**ଜହ୍ନୀ ମଞ୍ଜି ଧରିବା:—** ମଦାର ସବୁଠାରୁ ବଡ଼ ଏବଂ ନିଖୁଣ ଜହ୍ନୀ ମଞ୍ଜି ଲାଗି ଛାଡ଼ି ଦେବ । ଜହ୍ନୀ ପାଚିଲା ହୋଇ ଶୁଖିଗଲେ ତୋଳି ରଖିବ ।

---

# ତୋରଡ଼ା, ତରଡ଼ା

( ହିନ୍ଦି-**ଘିଆ ତୋରେଇ,** ବଙ୍ଗଳା-**ଧୁନ୍ଦୁଲ,**
ସଂସ୍କୃତ-**ଦୀର୍ଘ ପଟୋଳିକା** )

## LUFFA CYLINDRICA
## LUFFA AGYPTICA

ତରଡ଼ା:—ଦୁଇପ୍ରକାର । ଯଥା (୧) ମଧୁର ତରଡ଼ା ଏବଂ (୨) ପିତା ତରଡ଼ା । ପରିବା ଲାଗି ମଧୁର ତରଡ଼ା ଚାଷ କରା ଯାଇଥାଏ ।

# ମଧୁର ତରଡ଼ା

ଏହା ଗଞ୍ଜାମ ଜିଲା, ଫୁଲବାଣୀ ଜିଲାର ପାହାଡ଼ିଆ ଅଞ୍ଚଳରେ ବିଶେଷ ପରିମାଣରେ ଚାଷ କରାଯାଏ । ଜହ୍ନୀ ଲଟା ଅପେକ୍ଷା ତରଡ଼ା ଲଟା ବହୁତ ଶାଖା ପ୍ରଶାଖା ମେଲି ବଢେ । ଏଣୁ ତରଡ଼ା ଲଟାକୁ ଅମ୍ବ, ନିମ୍ବ, ବେଲ, ବରକୋଳି ଓ କଇଥ ଗଛରେ ମଡ଼ାଇ ଦିଆଯାଏ ।

ଗଞ୍ଜାମ ଜିଲରେ ମାଘମାସରେ ଧାନ କଟାଗଲା ପରେ ତରଭା ଲଗାଯାଏ । ଆଦିବାସୀ ଅଞ୍ଚଳରେ ଜ୍ୟେଷ୍ଠମାସରେ ଲଗା ଯାଇଥାଏ । ଶ୍ରାବଣ ମାସ ଆରମ୍ଭରୁ ତରଭା ବଜାରକୁ ଆସେ ।

# ପିଟା ତରଭା

( ବଙ୍ଗଳା--ତିତ ଧୁନ୍ଦୁଲ, ସଂସ୍କୃତ--କୋଷାତକୀ )

## LUFFA AMARA

ପିଟା ତରଭା ଚାଷ କରାଯାଏ ନାହିଁ । ଏହା ବର୍ଷା ଆରମ୍ଭରେ ଆପେ ଆପେ ଉଠି ଲଟାଏ । ଫୁଲ ଫଳ ଧରି ଦଶହରା ବେଳକୁ ଲଟା ମରିଯାଏ । ତରଭା ପାଚିଲା ହୋଇ ଶୁଖି ଗଲେ ଉପର ଖୋଳପା ଝଡ଼ି ପଡ଼େ । ମଞ୍ଜି ଜାଲି ଗୋଟାଳିଆ ହୋଇ ରହିଯାଏ । ଏହି ଜାଲି ମୁଠାଳାରୁ ମଞ୍ଜି ଝାଡ଼ି ଦେଇ କମାର ଓ କିଅଳ ଖଜୁରି ତାଡ଼ି ଛାଣିବା ଲାଗି ବ୍ୟବହାର କରନ୍ତି ।

---

## --ଚତୁର୍ଥ ପରିଚ୍ଛେଦ--

# ତରଭୁଜ ଜାତୀୟ ଫସଲ

## (CITRULLUS SP.)

ଏହି ବର୍ଗରେ ଚାରି ପାଞ୍ଚ ଜାତର ଉଦ୍ଭିଦ ଅଛି । ଏସିଆ ଓ ଅଫ୍ରିକାର ଗ୍ରୀଷ୍ମମଣ୍ଡଳ ଏହି ଉଦ୍ଭିଦ ବର୍ଗର ଜନ୍ମସ୍ଥାନ ଏହି ଗଛଗୁଡ଼ିକ ବର୍ଷେ ବଞ୍ଚେ । ଲଟାରୁ ସ୍ୱତନ୍ତ୍ର ଏକ ପ୍ରକାର ବାସନା ବାହାରେ । ପତ୍ରଗୁଡ଼ିକ ବହୁ ପରିମାଣରେ ଛିଣ୍ଡାଛିଣ୍ଡା ।

ଲତାର ଆକର୍ଷିଗୁଡ଼ିକ ୨-୩ଟି ଶାଖାଯୁକ୍ତ । ଫୁଲଗୁଡ଼ିକ ହଳଦିଆ । ଅଣ୍ଡିରା ଫୁଲରେ ତିନୋଟି ପୁଂକେଶର ଥାଏ । ମାଈଫୁଲରେ ପୁଂକେଶର ଅତି ଛୋଟ । ଫଳ ଗୋଲାକାର, ପାଚିଲେ ଫାଟେ ନାହିଁ । ଫଳରେ ବହୁତ ମଞ୍ଜି ଥାଏ । ମଞ୍ଜିଗୁଡ଼ିକ ଚିକ୍କଣ ।

ଜର୍ମାନ ଉଦ୍ଭିଦବିତ୍‌ମାନେ ତରଭୁଜ ବର୍ଗର ଉଦ୍ଭିଦଗୁଡ଼ିକୁ ଚାରୋଟି ଶ୍ରେଣୀରେ ଭାଗ କରିଛନ୍ତି । ଯଥା:—(୧) ବଲ୍‌ଗାରିଏ (୨) କ୍ଲେସାଣ୍ଡ୍ରିସ୍ (୩) ନାଉଦିଅନସ୍ (୪) ଏସିଓ୍ୱହସସ୍

କିନ୍ତୁ ଅନେକ ପଣ୍ଡିତ ଏହି ବର୍ଗର ଉଦ୍ଭିଦଗୁଡ଼ିକୁ ଦୁଇ ଶ୍ରେଣୀରେ ଭାଗ କରିଥାନ୍ତି । ଯଥା (୧) ତରଭୁଜ ଶ୍ରେଣୀ ଏବଂ (୨) ମହାକାଳ ଫଳ ଶ୍ରେଣୀ । ପ୍ରତ୍ୟେକ ଶ୍ରେଣୀରେ ଦୁଇ ତିନି ପ୍ରକାର ଗଛ ରହିଛି ।

---

# ତରଭୁଜ

( ହିନ୍ଦି-**ତରବୁଜ୍**, ସଂସ୍କୃତ-**ତରମ୍ବୁଜ** )

## WATERMELON
## CITRULLUS VULGARIS

ତରଭୁଜ କଳିଙ୍ଗ ଦେଶର ଫସଲ । କଳିଙ୍ଗର "ତରମୁଜ" ସ୍ଥାନର ଅପଭ୍ରଂଶ ତରଭୁଜ ହେବାର ସମ୍ଭାବନା; କିନ୍ତୁ ଅନେକଙ୍କ ମତରେ ଆଫ୍ରିକା ତରଭୁଜର ଜନ୍ମସ୍ଥାନ । ଅବିଷ୍କାରକ ଲିଭିଙ୍ଗଷ୍ଟୋନ୍ ମଧ୍ୟ ଆଫ୍ରିକାରେ ବିସ୍ତୀର୍ଣ୍ଣ ଅଞ୍ଚଳ ତରଭୁଜ-ଫସଲରେ ଆଚ୍ଛାଦିତ ହୋଇଥିବାର ଦେଖିଥିଲେ । ଏହି ଫଳ ମରୁ-ପ୍ରଦେଶର ପ୍ରଧାନ ଜଳ ଭଣ୍ଡାର । ତେଣୁ ଏହା ଆଫ୍ରିକା, ଆରବ,

ତୁରସ୍କ, ଇରାନ ଏବଂ ରୁଷିଆର ମରୁ ଅଞ୍ଚଳରେ ବହୁ ପରିମାଣରେ ଚାଷ କରାଯାଏ । ରୁଷିଆରେ ତରଭୁଜରୁ ଏକପ୍ରକାର ମଦ ବନାଯାଏ । ଓଡ଼ିଶାର ସବୁ ଅଞ୍ଚଳରେ ତରଭୁଜ ଚାଷହୁଏ । ନଦୀ ପଠା ବା ପାଳ ଓ ବାଲିଆ ମାଟି ଏହି ଫସଲ ଲାଗି ଉତ୍କୃଷ୍ଟ । ଗଞ୍ଜାମ ଜିଲ୍ଲାରେ ମଟାଳ ଓ ଟେକୁଆ ମାଟିରେ ମଧ୍ୟ ଏହା ଚାଷ କରାଯାଏ ।

**ପ୍ରକାର :—** ଲାଲ୍ ଏବଂ ଧଳା ଶସଦାର ଦୁଇଜାତର ତରଭୁଜ ଦେଖାଯାଏ । (କ) ଲାଲ୍ ଶସଦାର ଲମ୍ବା ଏବଂ ଗୋଲ । ପ୍ରତ୍ୟେକ ଜାତରେ ଅନେକ ରକମର ତରଭୁଜ ଅଛି । କେତେକ ପ୍ରକାର ତରଭୁଜର ଚୋପା ଚିକ୍କଣ ଏବଂ ଗାଢ ଶାଗୁଆ; କେତେକ ତରଭୁଜ ଚୋପା ଛିପିଛିପିକା ବା ପତଳା ଶାଗୁଆ ।

(ଗ) ଧଳାଶସଦାର ବା ସିଟ୍ରନ (Citron) ତରଭୁଜ ଶସ ସାଧାରଣତଃ ଈଷତ୍ ଲାଲ୍ । ହାତ ବାଜିଲେ ବା ଛନ ଓ ଛୁଡ଼ ସ୍ପର୍ଶରେ ପାଣି ଫାଟିଯାଏ । ଧଳା ଶସଦାର ତରଭୁଜକୁ "ସିଟ୍ରନ" କୁହାଯାଏ । ସିଟ୍ରନ ଆକାରରେ ଛୋଟ; ଏହାକୁ କେହି କେହି ଆଚାର କରନ୍ତି ।

**ମାଟି :—** ବାଲିଆ ପଟୁମିଶା ମାଟିରେ ତରଭୁଜ ଭଲ ହୁଏ । ମଟାଳ ମାଟିରେ ଗଛ ଶୀଘ୍ର ମାଡ଼େ ନାହିଁ କିମ୍ବା ଶୀଘ୍ର ଫୁଲ ଫଳ ଧରେ ନାହିଁ । ବାଲିଆ, ଦୋରସା ମାଟିରେ ତରଭୁଜ ମିଠାହୁଏ । ତେଣୁ ନଈପଠା ବା ନଈକୂଳିଆ ଜମି ତରଭୁଜ ଚାଷ ପାଇଁ ସବୁଠାରୁ ଉତ୍କୃଷ୍ଟ । ବଗିଚା ମାଟିରେ ଖତ ପିଇଆ ଦୋଳ ତରଭୁଜ ଚାଷ କରାଯାଏ ।

ଖଲା ମାଟିରେ ତରଭୁଜ ଭଲ ହୁଏ ନାହିଁ । ଅମ୍ଳତ୍ୱର ଅଧିକ ( PH. 4·8—6·5 ) ଥିବା ମାଟିରେ ତରଭୁଜ ଭଲ ହୁଥାଏ ।

**ଲଗାଇବା ସମୟ :—** ଓଡ଼ିଶାରେ କାର୍ତ୍ତିକ-ମାର୍ଗଶିର ମାସରେ ତରଭୁଜ ଲଗାଯାଏ । ଗଙ୍ଗା ଓ ଯମୁନା ନଦୀ ଉପତ୍ୟକାରେ ଫାଲ୍‌ଗୁନ ମାସରେ ଲଗାଯାଇଥାଏ ।

**ଲଗାଇବା ପ୍ରଣାଳୀ:—**ତରଭୁଜର ଚେର ଉପର ଫୁଟକ ମାଟିରେ ରହେ । ଅଧିକ ଗଭୀରକୁ ଯାଏ ନାହିଁ । କାକୁଡ଼ି ଅପେକ୍ଷା ତରଭୁଜ ଅଧିକ ଲଟାଏ । * ୭ଫୁଟ × ୭ଫୁଟ ବା ୧୨ଫୁଟ × ୧୨ଫୁଟରେ ମଦା ଖୋଳିବ । ମଦା ଦେଢ ଫୁଟ ଓସାର ଏବଂ ଫୁଟେ ଗଭୀର ହେବା ଦରକାର । କେହି କେହି ଜମିକୁ ହଲ୍ କୁଣ୍ଡକର ଷ୍ଟେଡ଼ର ଧାଡ଼ି ଏବଂ ୩-୪ଫୁଟ ଛଡ଼ାରେ ସିଅର ଖୋଳି ମଞ୍ଜି ଲଗାନ୍ତି । ମଦା ବା ସିଅରରେ ପ୍ରଚୁରଣାଖତ ଏବଂ ସିଝଅ ଦେଇ ଚେଷ୍ଟି ବା ଦରକାର ।

**ମଞ୍ଜି ପରିମାଣ:—**ଏକ ଏକର ପାଇଁ ଦେଢ଼ ସେରରୁ ଦୁଇସେର ମଞ୍ଜି ଦରକାର ହୁଏ ।

**ଲଗାଇବାପରେ କାର୍ଯ୍ୟ :—**ମଞ୍ଜି ଲଗାଇବାର ୮-୧୦ ଦିନ ମଧ୍ୟରେ ଗଛ ବାହାର ହୁଏ । ଗଛ ଲଟେଇବା ଯାଏ ଆବଶ୍ୟକମତ ପାଣିଦେବ । ଲଟା ବଢିଯିବା ପରେ ପାଣି ଦରକାର ପଡ଼େନାହିଁ ।

---

* Bealte W. R. "*Water* melons". W. S. Dept Agr. Farmer's Bull. *1394*, 1927

ମଦା ଓ ମଦା ମଞ୍ଜି ଗାଗାକୁ ଖୁସାଲ ଅନାବନାଗଛ ଓ ଘାସ ଉପାଡ଼ିଦେବ । ପ୍ରଧାନ ଲଟାରୁ ବେଶୀ ଗୁଡ଼ାଏ ଲଟା ମେଲିବାକୁ ଦେବ ନାହିଁ । ଶାଖା ଲଟାରେ ଫଳଗୁଡ଼ିକ ଶ୍ରେଷ୍ଠ ହୁଏ ।

**ଖତ ଓ ଗିଲିଆ :**—ଅମ୍ଳ ମାଟି ତରବୁଜ ପ୍ରତି ଅନୁକୂଳ । ଡେଶି ଏକର ପ୍ରତି ଦୁଇ ମହଣ ଆମୋନିୟମ୍ ସଲଫେଟ୍ କିଂବା ଦଶଗାଡ଼ି ଗୋମୋଷ୍ଟ ଖତ ଦେବ ।

**ଫଳ ଓ ତାର ଯତ୍ନ :**— ଗଛ ଉଠିବାର ଅଢ଼େଇରୁ ତିନିମାସ ମଧ୍ୟରେ ଫଳ ଧରେ । ପ୍ରତି ଲଟାରେ ୩-୪ଟିରୁ ଅଧିକ ଫଳ ରଖିବ ନାହିଁ । ଲଟାରେ ଫଳ ଦେଖାଦେଲେ ପାଣି ମଡ଼ାଇବା ଊଣାକରି ଦେବ ।

**ତରଭୁଜ ତୋଳିବା :**—କଞ୍ଚା ତରବୁଜ ନ ତୋଳି ପାଚିଲ ତରବୁଜ ତୋଳିବ । କଞ୍ଚା ପାଚିଲ ଜାଣିବାକୁ କେତେକ ଲକ୍ଷଣ ଅଛି ଯଥାଃ— (କ) ଟିପମରା—ଟିପ ମାରିଲେ ତରବୁଜ ଠାଁଠାଁ ଶୁଭିବ; କିନ୍ତୁ ପାଚିଲେ ତରବୁଜ ଧଡ୍ ଧଡ୍ ବାଜିବ । ଏହି ଶବ୍ଦ ସମ୍ବନ୍ଧରେ ଆମେରିକାର ଯୁକ୍ତ ରାଷ୍ଟ୍ରର ନିଗ୍ରୋ କୃଷି କହେ"Be sure.when you thump them, they always sound punk"

( ଖ ) ଲଟା ଓ ଫଳ ପାଖ ଅଙ୍କଶି ଗୋଡ଼ ଶୁଖିଯିବା ଫଳ ପାଚିବାର ପ୍ରଧାନ ସୂଚକ ।

( ଗ ) ତରବୁଜର ମାଟିପାଖ ଅଂଶ ହଳଦିଆ ମଞ୍ଜ ଠାଣ ଧରିବା ଫଳ ପାଚିବାର ଅନ୍ୟତମ ଲକ୍ଷଣ ।

( ଘ ) ହାଇଡ୍ରୋମିଟର ପରୀକ୍ଷା ( Hydrometer test )

କଞ୍ଚା ବେଳେ ତରବୁଜରେ ମିଠା ଭାଗ ଅଦୌ ନ ଥାଏ । ପାଚିବା ଅରମ୍ଭ ହେଲେ ଏହି ମିଠା ଭାଗ ଅସେ । କିନ୍ତୁ

ଇକ୍ଷୁ ଶର୍କରା, ଦ୍ରାକ୍ଷା ଶର୍କରା ଏବଂ ଲେଭୁଲୋଜ ଏହି ମିଠାଗୁଣ ଅଟେ । ତରଭୁଜ ଯେତେ ପାଚି ଆସୁଥିବ ଇକ୍ଷୁ ଶର୍କରା ପରିମାଣ ସେତେ ବଢ଼ୁଥିବ ଏବଂ ଅନ୍ୟାନ୍ୟ ଶର୍କରା ସେତେ କମି ଆସୁଥିବ । ଇକ୍ଷୁ ଶର୍କରା ସ୍ୱାଦପର ଦାନାଦାର । ସୁତରାଂ ତରଭୁଜ ପାଚିବା ସଙ୍ଗେ ସଙ୍ଗେ ତାର ପାଣିରେ ଇକ୍ଷୁ ଶର୍କରା ଅନୁପାତ ବଢ଼ୁଥିବ । ବ୍ରିକ୍ସ ହାଇଡ୍ରୋମିଟରରେ ଇକ୍ଷୁ ଶର୍କରା ଓ ଅନ୍ୟାନ୍ୟ କଠିଣ ପଦାର୍ଥ ଅଟକଳ କରାଯାଏ । ସୁତରାଂ ତରଭୁଜ କ୍ଷେତରୁ ଗୋଟିଏ ଦୁଇଟା ତରଭୁଜ ଆଣି କାଟି ତାର ରସରେ ମୋଟ କଠିନ ବସ୍ତୁ ପରିମାଣ ଅଟକଳ କଲାପରେ ତରଭୁଜ ଛିଣ୍ଡାଇବ ।

---

## ପଞ୍ଚମ ପରିଚ୍ଛେଦ

# କାକୁଡ଼ି ଜାତୀୟ ଫସଲ

କାକୁଡ଼ି ବର୍ଗରେ ପ୍ରାୟ ୩୦ଟି ଜାତିର ଗଛ ଅଛି । ଏଥିମଧ୍ୟରୁ ଅଧିକାଂଶ ଆଫ୍ରିକା ମହାଦେଶରେ ଜନ୍ମ । ସେମାନଙ୍କ ମଧ୍ୟରୁ କେତେକ ଏକବାର୍ଷିକ ଏବଂ କେତେକ ବହୁବାର୍ଷିକ । ପ୍ରାୟ ସମସ୍ତେ ଲଟେଇ ଲଟେଇ ବଢନ୍ତି ।

**ଫୁଲ**-ଗୋଟି ଗୋଟି ବା ପୁଳା ପୁଳା ହୋଇ ଧରେ । ୫ଟି ବୃନ୍ତ ଏବଂ ୫ଟି ପାଖୁଡ଼ା ଲଗା ଲଗି ହୋଇଥାଏ । ଅଣ୍ଡିରା ଫୁଲରେ ପୁଂକେଶର ୩ଟା କିନ୍ତୁ ମାଈ ଫୁଲରେ ପୁଂକେଶରର ଅଭାବ ଥାଏ ।

**ଫଳ**-ଲମ୍ବ, ଗୋଲାକାର ଏବଂ ଶସଦାର । କାକୁଡ଼ି ବର୍ଗର ଉଦ୍ଭିଦକୁ ସାଧାରଣତଃ ତିନୋଟି ଶ୍ରେଣୀରେ ଭାଗ କରାଯାଇ ଥାଏ ।

( ୧ ) ଲତା ୭ଫୁଟ ଲମ୍ବା, ପତ୍ର ଛୁଣ୍ଡା ଛୁଣ୍ଡା ଫଳ ଛୋଟ କନ୍ଟା କଣ୍ଟାଳିଆ; ଯଥା-ଘେରକିନ୍ । ( ୨ ) ଲତା ୧୫ଫୁଟ ଲମ୍ବା,ପତ୍ରଧାର ସାମାନ୍ୟ ବଙ୍କା, ଫଳଲମ୍ବା, ଯଥା- କାକୁଡ଼ି । ( ୩ ) ଲତା ଶାଗୁଆ ଲମ୍ବା, ଫଳ ଗୋଟାଳିଆ, ଚିକ୍କଣ, ଅଳ୍ପ ଅବୁଆ କିଂବା ଲୋମଯୁକ୍ତ । ଯଥା-ଖରବୁଜ ।

# କାକୁଡ଼ି

## CUCUMBER

## ( CUCUMIS SATIVUS )

( ହିନ୍ଦି-**ଖିରା**, ବଙ୍ଗଳା- **ଶଶା**, **ଖିରା**; ସଂସ୍କୃତ- **ତ୍ରପୁଷ**।)

ଭାରତବର୍ଷ କାକୁଡିର ଜନ୍ମସ୍ଥାନ । ପ୍ରାୟ ୩,୦୦୦ ବର୍ଷରୁ ଅଧିକ ହେବ ଏହା ଚାଷ କରାଯାଉଛି । ରୋମ ଦେଶର ଲୋକେ ମିଶରରୁ ଇଉରୋପକୁ କାକୁଡ଼ି ନେଇଥିଲେ । କଲମ୍ବସ୍ ଆମେରିକା ଆବିଷ୍କାର କରିବା ପରେ କାକୁଡ଼ି ଉତ୍ତର ଓ ଦକ୍ଷିଣ ଆମେରିକାକୁ ଯାଇଥିଲା ।

**ପ୍ରକାର:**—ସାଧାରଣତଃ ଦୁଇ ଶ୍ରେଣୀର କାକୁଡ଼ି ଅଛି; ଯଥା — ( ୧ ) ମୁଣ୍ଡି ବା ଖରାଟିଆ, ( ୨ ) ବର୍ଷାଦିନିଆ ।

**ମୁଣ୍ଡି ବା ଖରାଟିଆ:**—ଏହି କାକୁଡି ଲତା ଅତି ଛୋଟ, ମାଟି ଉପରେ ମାଡ଼େ । କାକୁଡ଼ି ଅଣ୍ଡାପରି ଛୋଟ ଛୋଟ । ଚୋପା ରଙ୍ଗ ଶାଗୁଆ, ଧଳା କିଂବା ହଳଦିଆ ଏହା କାର୍ତ୍ତିକ ମାସରୁ ମାଘମାସ ମଧ୍ୟରେ ଲଗାଯାଏ ।

**ବର୍ଷାଦିନିଆ :**— କାକୁଡ଼ି ଲତା ବହୁତ ଲମ୍ବା, ଘର, ରଞ୍ଜା କିଂବା ଗୁହାଳ ପିଢା ଉପରେ ମାଡ଼େ । ଦୁଇ ଜାତର ବର୍ଷାଦିନିଆ

କାକୁଡ଼ ରହିଛି । ଯଥା:- ( ୧ ) ଦୁଧିଅଳ-କାକୁଡ଼ ରଙ୍ଗ ଦୁଧସର ପରି ଫିକା ଧଳା ଏବଂ ( ୨ ) କଣ୍ଟିଅଳ-କାକୁଡ ରଙ୍ଗ ଗାଢ ଶାଗୁଆ । ବୁଢା ହୋଇଗଲେ ଦୁଧିଅଳ ଏବଂ କଣ୍ଟିଅଳ ଲୋହିଆ ମାଟିଆ ( Rusty brown ) ଦେଖାଯାଏ ।

ଏହି କାକୁଡ଼ ଚୈତ୍ର ପୂର୍ଣ୍ଣିମା ପରେ ରଜ ସଂକ୍ରାନ୍ତି ପର୍ଯ୍ୟନ୍ତ ଲଗାଯାଏ । ବର୍ଷାଦିନରେ ବହୁତ ଲଟେଇବା ହେତୁ ଭଣ୍ଡ, ରଞ୍ଜା ବା ଡେଙ୍ଗା ଗଛରେ ନଚେତ୍ ବାଡ ଓ ଘର ପିଢ଼ାରେ ମଡ଼ାଇ ଦିଆଯାଏ । ପାହାଡ଼ିଆ ଅଞ୍ଚଳରେ ଏହି କାକୁଡ଼ ପ୍ରଚୁର ପରିମାଣରେ ମିଳେ ।

**ଲଗାଇବା ପ୍ରଣାଳୀ :—** ମନ୍ଦାକରି କାକୁଡ଼ ଲଗାଯାଏ । ୪ଫୁଟ × ୪ଫୁଟ ବା ୬ଫୁଟ × ୬ଫୁଟ ଅନ୍ତରରେ ମନ୍ଦାକରିବ । ହାତେ ନଗାଲେଇ ଓ ହାତେ ଗହିରା ମନ୍ଦା ଖୋଳିବ । ମନ୍ଦା ମାଟିରେ ଏକଭାଗ ପୁରୁଣା ଖତ ଫେଣ୍ଟି ଦେବ । ଖତ ପାଉଁଶ ଗମିଗିବା ପରେ ମଞ୍ଜି ଲଗାଇବ ।

**ଏକରପ୍ରତି ମଞ୍ଜି :—** ମଞ୍ଜି ଲଗାଇବା ପୂର୍ବଦିନ ଖୁଡରେ କନାରେ ବାନ୍ଧି ପାଣିରେ ବୁଡ଼ାଇ ଦେଇଥିବ । ସକାଳୁ ମଞ୍ଜିକୁ ପାଣିରୁ ଆଣି ଉପରେ ବେଳା ଲଗାଇବ । ମନ୍ଦା ପ୍ରତି ତିନିଗୋଟି ମଞ୍ଜି ଲଗାଇବ । ଏକ ଏକର ଜମି ଲାଗି ଅଧସେର ମଞ୍ଜି ପଡେଥାନ୍ତି ।

ମଞ୍ଜିକୁ ତଳି ପକାଇ ଗଛ ତିନି୍‌ ଚାରି ପତ୍ର ହେଲେ ମଧ୍ୟ ଲଗାଯାଏ । ଜମିକୁ ଗୁଣ୍ଡ ଚାଷକରି ମଇଦେବା ପରେ ନାଳଖୋଳା ଯନ୍ତ୍ରରେ ଛଅଫୁଟ ଅନ୍ତରରେ ଚାରିଇଞ୍ଚ ଗହିରାରେ ନାଳ ଖୋଳିବ ଏହି ନାଳରେ ଛଅଫୁଟ ଅନ୍ତରରେ ଗଛ ଲଗାଇବ ।

**କାକୁଡ଼ି ଫଳବା :**—ଗଛ ଲଗାଇବାର ୨୫-୩୦ ଦିନ ପରେ ଫୁଲ ଫୁଟେ । ଅଗେ ଅଣ୍ଡିରା ଫୁଲ ଫୁଟେ । ୧୦-୧୨ ଦିନ ପରେ ମାଈ ଫୁଲ ଦେଖାଯାଏ ।

ପ୍ରତି ତିନି ଚାରିଦିନ ଛାଡ଼ି କାକୁଡ଼ି ତୋଳିବ । ଲଟାରେ ଗୋଟାଏ କାକୁଡ଼ି ବୁଢା ହୋଇଗଲେ ସେ ଲଟା ଆଉ କଷି ଧରେ ନାହିଁ । ମଞ୍ଜି ରଖିବା ଲାଗି ତିନି ଚାରୋଟି ମଦା ଛାଡି ଅନ୍ୟାନ୍ୟ ମଦାଗୁଡିକରୁ କାକୁଡ଼ି ତୋଳି ନେଉଥିବ ।

**କାକୁଡ଼ି ଫସଲର ଶତ୍ରୁ :**— (୧) ଭୁରୁଙ୍ଗା ମରା— ପତ୍ର ମୋଡ଼ି ମୋଡ଼ି ହୋଇଯାଏ । ଗଛ ଆଉ ଲଟାଏ ନାହିଁ । ଏକପ୍ରକାର ଛୋଟ କୀଟ ପତ୍ରର ରସ ଶୋଷି ନେଉଥିବା ହେତୁ ଏପରି ଘଟେ । ଧୂଆଁପତ୍ର ସିଝା ପାଣି ଲଟା ଓଲଟାଇ ପତ୍ରର ତଳ ପାଖରେ ପିଚକାରୀ ଦେବ । ଗଛରୁ ଭଳୁଣି ମରିପିବେ; ଭୁରୁଙ୍ଗାମରା ଛାଡ଼ିଯିବ । (୨) ଫଳବିନ୍ଧା ପୋକ (·Pickle worm ) ଛୋଟ ଶାଗୁଆ ଗୋଟି ପୋକ କାକୁଡ଼ି ଫୁଟିକରି ଭିତରେ ପଶିଯାଏ । ସେହି ସ୍ଥାନରୁ କାକୁଡ଼ି ପଚିଯାଏ ।

କାକୁଡ଼ି ଲଗାଇବା ଦିନରୁ କ୍ଷେତକୁ ଅନାବନା ଘାସ ଉପାଡ଼ି ପରିଷ୍କାର ରଖିଲେ ଏହି ପୋକ ସାଧାରଣତଃ ବଢିବା ଲାଗି ସୁବିଧା ପାଏ ନାହିଁ ।

## କାକୁଡ଼ି ଫସଲ ରୋଗ

**ଗଛ ଝାଉଁଳା**— ଗଛ ଦୁଇ ତିନି ପତ୍ର ହେଲକୁ ଝାଉଁଳି ପଡି ମରିଯାଏ । ଝାଉଁଳି ମରିବା ଗଛକୁ ଭାଙ୍ଗି ଦେଲେ ଭିତରୁ ଅଠାଳିଆ ରସ ବାହାରି ପଡ଼େ । ଏହି ରସ ସୂତାପରି ଟାଣି ହୋଇଯାଏ ।

ଏକ ପ୍ରକାର ବାକ୍ଟେରିଆ ହେତୁ ଏହି ରୋଗ ବାହାରେ । ଏକପ୍ରକାର ଛୋଟ କୀଟ ଦ୍ୱାରା ରୋଗ ସଂଚାର ବ୍ୟାପିଥାଏ । ଏହି କୀଟଗୁଡ଼ିକୁ "ଛଦକ" କୁହାଯାଏ ।

"ବୋର୍ଡୋମିକ୍ସ୍ଚର" ପିଚ୍କାରୀ ଦେଲେ ଏହି ଛଦକ କୀଟ ନଷ୍ଟ ହୋଇଯାନ୍ତି । ପନ୍ଦର ଦିନରେ ଥରେ ଏହି ଔଷଧ ବ୍ୟବହାର କରିବା ଦରକାର ଅମେରିକାର ଯୁକ୍ତରାଷ୍ଟ୍ରରେ 'ଲେଡ୍ଆର୍ସେନେଟ୍' ବ୍ୟବହାର କରନ୍ତି । ୨ନମ୍ବର'ଲେଡ଼୍ଆର୍ସେନେଟ୍' ଗୁଣ୍ଡିକୁ ୫୦ ଗାଲନ ପାଣିରେ ମିଶାଇ ପିଚ୍କାରୀ ଦିଆଯାଏ । ମାତ୍ର ଏହି ଔଷଧ ମନୁଷ୍ୟ ପକ୍ଷରେ କ୍ଷତିକାରକ । ତେଣୁ ଏହାର ବ୍ୟବହାର ଲାଗି ସାବଧାନତା ଦରକାର ।

**କହରା ପଡ଼ିବା:**— (mosaic) ପତ୍ର ହଳଦିଆ ବା ଛିଟିଛିଟିକା କହରା ଦେଖାଯାଏ । ଲଟା ମୋଡ଼ ହୋଇ ରହି ଯାଇ ବଢ଼େନାହିଁ ଏବଂ ଫୁଲ କଷି ଦିଆଏ ନାହିଁ । ଗଛ 'ଫାକୁଣ୍ଡିଆ' ପଡ଼ି କାକୁଡ଼ି ଅବୁଆ ଅବୁଆ ହୋଇଯାଏ । 'ଭାଇରସ୍' ଏହି ରୋଗର ନିଦାନ । ଗଛ ଉକୁଣି ଦ୍ୱାରା ଏହି ରୋଗ କ୍ଷେତରେ ବ୍ୟାପିଥାଏ । ବୋର୍ଡୋ ମିକ୍ସ୍ଚର ପିଚ୍କାରୀ ଦେଇ ଏହି ଛଦକ କୀଟ ନଷ୍ଟ କରିବା ଦରକାର ।

**ଛତିଆମାରିବା:**— (Powdery mildew) ଗଛ ବୁଢ଼ା ହୋଇ ଆସିବା ବେଳକୁ ପତ୍ର ମୂଳକୁଟା ମାରି ପାଉଁଶିଆ ଦେଖା-ଯାଏ । ଏକ ପ୍ରକାର ଫିମ୍ପି ହେତୁ ଏହି ରୋଗ ଘଟେ । ମୂଳକୁଟା ମାରିଲେ ଗଛ ଅଳ୍ପ ଫଳ ଦିଆଏ ନାହିଁ ।

ବୋର୍ଡୋମିକ୍ସ୍ଚର ପିଚ୍କାରୀ ଦେଲେ ମୂଳକୁଟା ମରି ଯାଏ ।

**ପତ୍ରପଚ୍ :—** ( Anthracnose ) ଲଟାପତ୍ରରୁ ସୁତ୍ରକ୍ ଅଧିକ୍ ଆକାନ୍ତରେ ପୋଡ଼ ପୋଡ଼ ଯାଏ । ଲଟାରେ ମଧ୍ୟ ଗୋଲ ଗୋଲ କଳାଦାଗ ଦେଖାଯାଏ । କୋହଲା ପଡ଼ିଲେ ଲଟାମାନଙ୍କ ସଢି ପଚଯାଏ

ବୋର୍ଡୋମିକ୍ସଚର ପିଚକାରୀ ଦେବ । ସଢା ଲଟା ଗୋଟେଇ ପୋଡ଼ ଦେବ ।

# ବଙ୍କା କାକୁଡ଼ି

## ( NUBBINS )

କାକୁଡ଼ ପଦ୍ମଲ୍ ବୃଥ ଫଳରେ ନାଶି ପାଖରୁ ବାଙ୍କେଡ଼ ଯାଏ । ଭର୍ତ୍ତି ପାଖ ଗ୍ମମା, ବେକଟା ସରୁଆ ଏବଂ ଅଗିଲଟା ମୋଟା ହେତୁ କାକୁଡ଼ ବେଢ଼ଙ୍କଣ ଦେଖାଯାଏ । ବେକ ସରୁଆ ଅଂଶରେ ମଞ୍ଜି ନ ଥାଏ । ଶ୍ୱେତସାର ଏବଂ ଫଳ ଶର୍କରା ଅଭାବ ହେତୁ ପାଣିଚିଆ ଲଗେ ।

ଏହି ବଙ୍କା କାକୁଡ଼ ଦୁଇଟି କାରଣରୁ ଘଟିଥାଏ । (୧) ଫୁଲ ମଉଳ ଅସିବା ପୂର୍ବରୁ ପରାଗ ସଙ୍ଗମ ଘଟିଲେ ପରାଗ ରେଣୁ ଭ୍ରୂଣ-ଫଳର ଅଗ ଅଡ଼କୁ ଥିବା ଡ଼ିମ୍ବାଣୁ ସହିତ ସଙ୍ଗମ ଘଟେ । ତେଣୁ ଅଗିଲ ଅଂଶରେ ମଞ୍ଜି ରହେ । ମାତ୍ର ପରାଗ ରେଣୁ ଫଳର ଭର୍ତ୍ତି ପାଖ ଅଂଶକୁ ପହଞ୍ଚି ନ ପାରିବାରୁ ଡ଼ିମ୍ବାଣୁଗୁଡ଼ିକ ଶୁଖି ନଷ୍ଟ ହୋଇଯାଏ ।

(୨) * ପୋଟାଶ ଅଭାବ—ବାଲିଆ ଏବଂ ମଟାଳ ମାଟିରେ ପୋଟାଶ ଉପାଦାନ ଅଭାବ ପଡ଼ିଲେ ଶ୍ୱେତସାର ଉପାଦାନ

* Hoffman I. C. 1938
Tomatoes and cucumbers Reveal diet needs.
Better crops with plant food, May 1938

ତିଆରି ହୋଇ ପାରେ ନାହିଁ । ଶ୍ୱେତସାର ଅଭାବରେ ମଞ୍ଜିର ବୃଦ୍ଧି ହୁଏ ନାହିଁ । ମଞ୍ଜି ଅପୋଢ଼ା ଥିବାବେଳେ ଫଳର ପୂର୍ଣ୍ଣ ବିକାଶ ଘଟେନାହିଁ । ତେଣୁ ବଙ୍କା ଟେଙ୍କିଆ କାକୁଡ଼ି ମିଳେ ।

କାକୁଡ଼ି ଗଦାରେ ଅଧିକ ଲେଖାଏଁ ପାଉଁଶ ମିଶାଇ ଥିଲେ ଏହି ବଙ୍କାଟେଙ୍କିଆ କାକୁଡ଼ି ଫଳେ ନାହିଁ ।

**ଉତ୍କୃଷ୍ଟ ଧରଣର କାକୁଡ଼ି ବିହନ ରଖିବା :—** ଭଲ କାକୁଡ଼ି ବିହନ ପାଇବା ଲାଗି ନିମ୍ନଲିଖିତ ବ୍ୟବସ୍ଥା କରିବା ଦରକାର । ୧- ଲତାର ଫୁଟିଲା ଅଣ୍ଡିରା ଏବଂ ମାଈ ଫୁଲକୁ ଛୁଣ୍ଡାଇ ଢକାଇବ । ୨- ଅଣ୍ଡିରା ଏବଂ ମାଈ କଢ଼ କେତେଥି କାଗଜ ମୁଣିରେ ବାନ୍ଧିଦିଅ । କଢ଼ିଗୁଡ଼ିକ ହଳଦିଆ ରଙ୍ଗ ଧରିବା ପୂର୍ବରୁ ମୁଣିରେ ବନ୍ଧାଯିବା ଦରକାର । ୩- ପରଦିନ ବଡ଼ ଭୋରରୁ କୌଣସି ମହୁମାଛି ଫୁଲ ଉପରେ ବୁଲିବା ପୂର୍ବରୁ ଲତାର ଅଣ୍ଡିରା ଫୁଲକୁ ଭାଙ୍ଗି ଆଣି ମାଈ ଫୁଲର ଗର୍ଭ କେଶର ଉପରେ ଘଷିଦେବ ।

ଏକା ଲତାରୁ ଅଣ୍ଡିରା ଓ ମାଈଫୁଲ ମଧ୍ୟରେ ପରାଗ ସଙ୍ଗମ କରାଇବ ।

୪- ପରାଗ ସଙ୍ଗମ ଠିକ୍ ପରେ ମାଈ ଫୁଲକୁ କନା ମୁଣିରେ ଘୋଡ଼େଇ ଦେବ । ଦୁଇ ଦିନ ପରେ ମୁଣି ବାହାର କରିନେବ । ଏହି କାକୁଡ଼ି ଦେହରେ ସୂତା ବାନ୍ଧି ରଖିବ । କାକୁଡ଼ି ପାଚିଲା ହୋଇ ଲତା ଶୁଖିଗଲେ ତୋଳି ଆଣିବ ।

**କାକୁଡ଼ିରୁ ମଞ୍ଜି ଧରିବା:—** ପାଚିଲା କାକୁଡ଼ିର ନାଳି ମୁଣ୍ଡରେ ଗୋବର ଦେଇ ଶିକାରେ ଝୁଲାଇ ରଖାଯାଏ । ମଞ୍ଜି ଲଗାଇବାର ଅଳ୍ପଦିନ ପୂର୍ବରୁ କାକୁଡ଼ି କଟାଯାଇ ମଞ୍ଜି ଧରାଯାଏ ।

# କସ୍ତୁରୀ ତରଭୁଜ

## ( ଖର୍ବୁଜ, କାବୁଲି ଦେଶୀୟ ତରଭୁଜ )

## ( MUSK MELON CUCUMIS MELO )

ପାରସ୍ୟ ଦେଶ କସ୍ତୁରୀ ତରଭୁଜର ଜନ୍ମସ୍ଥାନ । ଏହା ପନିପରିବା ରୂପେ ବ୍ୟବହାର କରାଯାଏ ନାହିଁ । ପାଚିଲେ ଫଳ ରୂପେ ବ୍ୟବହାର କରାଯାଏ । ଏହାର ବାସନା ମୃଗନାଭି କସ୍ତୁରୀ ପରି । ପାରସ ଭାଷାରେ କସ୍ତୁରୀକୁ "ମସ୍କ" କୁହାଯାଏ ଏବଂ ଫରାସୀ ଭାଷାରେ ତରଭୁଜ ଆକାରର ଫଳକୁ "ମେଲନ" ( Latin— melopepo ) କୁହାଯାଏ । ସୁତରାଂ କସ୍ତୁରୀ ତରଭୁଜର ଅନ୍ୟନାମ "ମସ୍କ ମେଲନ୍" ।

ପାରସ୍ୟ, କକେସସ୍ ପର୍ବତ ଅଞ୍ଚଳ, ଅଫଗାନିସ୍ଥାନ, କାଶ୍ମୀର ଏବଂ ଉତ୍ତରଭାରତ ଅଞ୍ଚଳରେ କସ୍ତୁରୀ ତରଭୁଜ ଚାଷ ବହୁ ପରିମାଣରେ ଦେଖାଯାଏ । ଖ୍ରୀଷ୍ଟପୂର୍ବ ୨୪୦୦ ବର୍ଷ ପୂର୍ବରେ ମିଶର ଦେଶରେ ଖରଭୁଜର ଛବି ଦେଖିବାକୁ ମିଳେ । ଗ୍ରୀକ୍ ଓ ରୋମାନ୍ ମାନେ ପ୍ରଥମେ ଏହାର ଚାଷକଲେ । କଲମ୍ବସ୍ ଏହି ଫଳର ମଞ୍ଜି ଆମେରିକାକୁ ନେଇଥିଲେ ।

କସ୍ତୁରୀ ତରଭୁଜ ଆମେରିକା ଯୁକ୍ତରାଷ୍ଟ୍ରର କାଲିଫର୍ଣ୍ଣିଆ ଷ୍ଟେଟରେ ବିଶେଷତଃ ଇମ୍ପେରିଅଲ ଭାଲି ଅଞ୍ଚଳରେ ବହୁଳ ପରିମାଣରେ ଚାଷ କରାଯାଏ । ଜନନ ପ୍ରକ୍ରିୟାଦ୍ୱାରା କସ୍ତୁରୀ ତରଭୁଜର ଆକାର, ସ୍ୱାଦ ଓ ବାସନାରେ ବହୁତ ଉନ୍ନତ କରାଯାଇଛି ।

କସ୍ତୁରୀ ତରଭୁଜକୁ ସାଧାରଣତଃ ତିନିଭାଗରେ ବିଭକ୍ତ କରାଯାଇଛି । ଯଥା – (୧) କାଣ୍ଟାଲୋପ, (୨) ହନିଡ୍ୟୁ ଏବଂ (୩)

(ଗ)କାସାବା । ଏହି ତିନୋଟି ଜାତର ବିଶିଷ୍ଟ ଗୁଣଗୁଡ଼ିକର ସୂଚନା ତଳେ ଦିଆଗଲା ।

| | କାଣ୍ଟାଲୋପ Cantaloupe | ହନିଡ୍ୟୁ Honeydew | କାସାବା Casaba |
|---|---|---|---|
| ଫଳ | ବର୍ଣ୍ଣ ହଳଦିଆ, ଚୋପା ଉପରେ ଜାଲି ପରି, ଶସ ହଳଦିଆ, କୋମଳ ଏବଂ କସ୍ତୁରୀ ବାସ | ବର୍ଣ୍ଣ ଧଳା, ଚୋପା ଚିକ୍କଣ, ଶସ ଶାଗୁଆ ବା ଈଷତ୍ ପାଣ୍ଡୁର | ବର୍ଣ୍ଣ ହଳଦିଆ ବା ବାଘଗଣିଆ, ଶସ ଧଳା ଏବଂ ଖୁନ୍ଦାଳ ପରି ଥାଏ । କସ୍ତୁରୀ ବାସନା ନାହିଁ |
| ମଧୁରତା | ସାମାନ୍ୟ ମଧୁର | ଅତି ମଧୁର | ପାଣିଚିଆ ବା ସାମାନ୍ୟ ମିଠା |

**ମାଟି** :— ବାଲିଆ, ବାଲିସର ଓ ଦୋରସା ମାଟି ଉତ୍କୃଷ୍ଟ ।

**ଲଗାଇବା** :— ଖତୁଆ ମାଟିରେ ମଞ୍ଜି ତିନି ପକାଇ ଗୁଡ଼ି ଚଢ଼ି ତିନି ଗୁଡ଼ି ପତ୍ର ହୋଇଗଲେ ମନ୍ଦାରେ ବା ପିଅଳରେ ଲଗା ଯାଇପାରେ । ଜମିକୁ ଗୁଣ୍ଡ କରି ଦେଢ଼ି ନାଳି ଖୋଳା ପନ୍ଦରେ ପିଅଳ କରି ଗଛ ଲଗାଇବା ଭଲ । ପ୍ରତି ଛଅ ଫୁଟ ଅନ୍ତରରେ ମନ୍ଦା ବା ପିଅଳ ରହିବା ଦରକାର ।

**ମଞ୍ଜି ପରିମାଣ** :— ଏକର ପ୍ରତି ଦେଢ଼ ସେରରୁ ଦୁଇସେର ମଞ୍ଜି ଦରକାର ପଡ଼େ ।

**ଖଡ଼ିଆ ସାର** :— ଖରଭୁଜ ମାଟିରୁ କି କି ଉପାଦାନ ନେଇ ବଢେ ତାହା ଲଟା, ଫଳ ଏବଂ ମଞ୍ଜିକୁ ବିଶ୍ଳେଷଣ କଲେ ଜଣାପଡ଼େ । ସେହି ବିଶ୍ଳେଷଣର ଫଳ ପରପୃଷ୍ଠାରେ ଦିଆଗଲା ।

| ଗଛର ବଢନ୍ତି ଅଙ୍ଗ | ଏକ ଏକର ଜମିରୁ ଅମଦାନି ଓ ଖାଦ୍ୟପଦାର୍ଥ ବ୍ୟବହାର (ପାଉଣ୍ଡ) | | | | | |
|---|---|---|---|---|---|---|
| | କଞ୍ଚା ଓଜନ | ଶୁଖିଲା ଓଜନ | ନାଇଟ୍ରୋଜେନ | ଫସ୍ ଫରସ୍ | ପୋଟାଶ | ଚୂନ |
| ଲତା | ୩,୯୩୨ | ୯୬୯ | ୧୯.୮ | ୩.୮ | ୨୮.୨ | ୫୩.୫ |
| ଫଳ | ୧୧,୩୧୦ | ୧ ୧୫୪ | ୨୦.୫ | ୭.୭ | ୪୮.୭ | ୮.୪ |
| ମଞ୍ଜି | ୨,୧୭୫ | ୩୦୭ | ୯.୮ | ୩.୯ | ୧୩.୫ | ୦.୪ |
| ମୋଟ | ୧୬,୭୧୭ | ୨,୪୦୦ | ୫୦.୨ | ୧୫.୪ | ୯୦.୩ | ୬୨.୨ |

ଖରଭୁଜ ନାଇଟ୍ରୋଜେନ, ପୋଟାଶ ଏବଂ ଚୂନ ବହୁ ପରିମାଣରେ ଦରକାର କରେ । ତେଣୁ ଷେତରେ ଖତ ଖୁବ ଗାଢ଼ ପାଉଁଶ ଦେବା ଭଲ । ଖରଭୁଜ ତୋଳା ସିବାପରେ ଶୁଖିଲ ଲତାକୁ ପୋଡ଼ିଦେଲେ ଚୂନଗୁଡ଼ିକ ମାଟିରେ ପୁଣି ମିଶିଯାଏ ।

ଖରଭୁଜ ଲତା ହାତେ ଲମ୍ବା ହେବା ବେଳକୁ ମନ୍ଦା ପ୍ରତି ଅଧପାଏ ପିଡ଼ିଅ ଏବଂ ଏକଛଟାକ ଅମୋନିୟମ୍ ସଲଫେଟ ଦେଇ ମାଟି ଖୁସାଇ ଦେବ ।

**ଯନ୍ତ୍ର:**— ଲତା ମାଡ଼ିବା ପୂର୍ବରୁ ମନ୍ଦା ଅଉ ମଝି ପଟି ଜମି ଖୁସାଇ ପରିଷ୍କାର ରଖିବ । ପାଗ ଦେଖି ପାଣି ମଡ଼ାଇବ । ଫୁଲ ଛାଡ଼ିଲାବା ପରେ ଲତା ଓଲଟ ପାଲଟ କରିବ ନାହିଁ ।

**ରୋଗ ଓ ଶତ୍ରୁ:**— ଡରଭୁଜକୁ ଯେଉଁ ପୋକ ନଷ୍ଟ କରନ୍ତି ଖରଭୁଜକୁ ମଧ୍ୟ ସେହି ପୋକ ନଷ୍ଟ କରନ୍ତି ।

**ଖରଭୁଜ ତୋଳିବା:**— ଯେଉଁ ଲକ୍ଷଣଗୁଡ଼ିକ ଦେଖି ତରଭୁଜ ତୋଳିବାକୁ କୁହାଯାଇଛି ସେହି ଲକ୍ଷଣଗୁଡ଼ିକ ଦେଖି ମଧ୍ୟ ଖରଭୁଜ ତୋଳିବ ।

**ଅମଦାନି:**—ଏକର ପ୍ରତି ୧୦୦ ମହଣ ଓଜନର ଖରଭୁଜ ମିଳେ ।

# ଫୁଟି

## CUCUMIS MELOVAR
## MOMORDICA.

ପଟୁପଡ଼ା ମାଟି ଏବଂ ଖରୁଆ ସ୍ଥାନ ଫୁଟି ଚାଷ ଲାଗି ଉତ୍କୃଷ୍ଟ । ବାଲିଆ ଅଳ୍ପ ଖୋଳା ହେବା ପରେ ଫୁଟି ମଧ୍ୟ ଲଗା ଯାଇପାରେ । ନଦୀକୂଳ ପଟୁମିଶା ଜମିରେ ସାଧାରଣତଃ ଫୁଟି ଲଗାଯାଏ ।

**ଲଗାଇବା ସମୟ :**— ଜ୍ୟେଷ୍ଠ ଅଷାଢ଼ ମାସରେ ମକା ଓ ନଳିତା କଅସ୍ତରେ ଫୁଟି ଲଗା ଯାଇଥାଏ । କିନ୍ତୁ ନଦୀ ବଢ଼ି ଛାଡ଼ିବା ପରେ କାର୍ତ୍ତିକ ମାସରେ ନଚେତ୍ ଧାନକଟା ଶେଷ ହେଲେ ଧାନ ଜମିରେ ମାଘ ମାସରେ ଫୁଟି ଲଗାଯାଏ ।

**ଲଗାଇବା ପ୍ରଣାଳୀ :**— ଚାରିଫୁଟ ଅନ୍ତରରେ ମନ୍ଦା ଖୋଳି ଫୁଟି ଲଗାଯାଏ । ପଟୁପଡ଼ା ମାଟିରେ ଖତଟିକିଆ କିଛି ଦିଆଯାଏ ନାହିଁ । ଦୋରସା ଏବଂ ମଟାଳ ଜମିରେ ମନ୍ଦାପ୍ରତି ଅଧ ଟୋକେଇ ଗୋବର ଖତ କିମ୍ବା ପାଉଁଶ ଫେଣ୍ଟି ଦେଇ ମଞ୍ଜି ଲଗାଯାଏ ।

**ଏକର ପ୍ରତି ମଞ୍ଜି :**— ମନ୍ଦାପ୍ରତି ଦୁଇ ତିନୋଟି ମଞ୍ଜି ଲଗାଯାଏ । ଏକର ପ୍ରତି ୮-୧୦ ଛଟାଙ୍କି ମଞ୍ଜି ଦରକାର, ଗଛ ଉଠିଗଲେ ମନ୍ଦା ପ୍ରତି ଦୁଇଟି ଗଛ ରଖିବ ।

**ପରବର୍ତ୍ତୀ ଯତ୍ନ :**— ଛୋଟ ଗଛକୁ ସୁନାପାଙ୍ଖିଆ ପୋକ ଖାଇଯାଏ ପାଉଁଶ ଛିଞ୍ଚିବ । ମନ୍ଦା ଖୁସାଇ କ୍ଷେତ ପରିଷ୍କାର ରଖିବ । ଦରକାର ମୁତାବକ ପାଣି ଦେବ ।

**ଫଳ ତୋଳିବା :**- କଷିବେଳେ ଫୁଟି ଗାଢ଼ ଶାଗୁଆ ଦେଖାଯାଏ । ମଞ୍ଜ ମିଠା ଲାଗେ; ତେଣୁ କଞ୍ଚା ଫୁଟି କେହି ବ୍ୟବହାର କରନ୍ତି

ନାହିଁ । ଫୁଟି ପାକଳ ହେଲେ ପିତା ଭାଗ କମିଯାଏ । ଫଳ ପାଚି ଗଲେ ଫାଟିଯାଏ ଏବଂ ଶସ ଖଣ୍ଡ ଖଣ୍ଡ ଝଡ଼ି ପଡ଼େ । ପାଚିବା ପୂର୍ବରୁ ଗୋଟିଏ ସୁଗନ୍ଧ ବାହାରେ ଏବଂ ଫୋପା ହଳଦିଆ ବା ଘୁମି ଘୁମିକିଆ ଦେଖାଯାଏ । ଏହି ଲକ୍ଷଣ ଦେଖିଲେ ଫୁଟି ତୋଳିନେବ । ପଚିଲା ଫୁଟିକୁ ବାଲୁଅ ନଷ୍ଟ କରି ପକାନ୍ତି ।

ଝାଞ୍ଜି ବଢ଼ିଲେ ଫୁଟି ପାଚେ, ଚୈତ୍ରମାସ ଶେଷରୁ ଜ୍ୟେଷ୍ଠ ମାସ ପର୍ଯ୍ୟନ୍ତ ଫୁଟି ତୋଳାଯାଏ । ଶସ ଝଡ଼ି ପଡ଼ିବା ଲାଗି ନଡ଼ା କମ୍ବା ବରଡ଼ା ପତ୍ରରେ ବାନ୍ଧି ଦିଆଯାଏ ।

---

## — ଷଷ୍ଠ ପରିଚ୍ଛେଦ —

# କଲରା ଜାତି ଫସଲ

## କଲରା

### ( କାରବେଲ୍ଲ )

### BITTER GOURD
### MOMORDICA CHARANTIA.

ଭାରତବର୍ଷ କଲରାର ଜନ୍ମସ୍ଥାନ । ସଂସ୍କୃତରେ କଲରା ଲତାକୁ "ତୋୟବଲ୍ଲୀ" କୁହାଯାଏ । ପାହାଡ଼ିଆ ଅଞ୍ଚଳର ବଣ ଜଙ୍ଗଲରେ କଲରା ପ୍ରଚୁର ପରିମାଣରେ ଦେଖାଯାଏ । ଏ ଗଛକୁ ମରୁଡ଼ି ବାଧେ ନାହିଁ ।

**ପ୍ରକାର :**— ଦୁଇ ଜାତିର କଲରା ଦେଖାଯାଏ ଯଥା—(୧) ଠୁଷି:- ପତ୍ର ଛୋଟ ଛୋଟ, କଲରା ଗୁଆପରି (୨) ବଡ଼ କଲରା ବା ସଲାରି:- ପତ୍ର ବଡ ବଡ଼; କଲରା ୩-୯ ଇଞ୍ଚ ଲମ୍ବା । ପ୍ରତ୍ୟେକ ଜାତିର ମଧ୍ୟ ଦୁଇଟି ବିଭାଗ ଅଛି ।




**ଝୁଣ୍ଟି** :— ଲଟା ଅଳ୍ପ ଲମ୍ବା ୬ ଫୁଟରୁ ଅଧିକ ହୁଏ ନାହିଁ । ପତ୍ର ଛୋଟ ଛୋଟ । ଗଛ ୩ ମାସ ରହି ମରିଯାଏ । ଶୀତ ଓ ଖରାଦିନରେ ଫଳେ । କଲରା ଧୂଆ ପରି, ଚୋପାଠାରୁ ମଞ୍ଜି ଓଜନ ଅଧିକ, ଚୋପା ପାତଳ ।

**ପାହାଡ଼ି** :— ଏହା ଝୁଣ୍ଟି କଲରା ପରି; କିନ୍ତୁ ବହୁତ ଲଟାଏ । ଲଟାଇବା ଲାଗି ପାଣି ଦରକାର ପଡ଼େ ନାହିଁ । ଚୈତ୍ର ବୈଶାଖ ମାସରେ ଫଳ ପରିମାଣ ଅଧିକ । କଲରା କ୍ୱିନାଇ ତରକାରୀ ରୂପେ ବ୍ୟବହୃତ ହୁଏ ।

**କଲରା** :— ଲଟା ବହୁତ ଲମ୍ବାରେ ମାଡ଼େ । ବର୍ଷା, ଶୀତ ଏବଂ ଖରାଦିନରେ ଚାଷ କରାଯାଏ । ଲଟା ଶାଖାପ୍ରଶାଖା ମେଲି ବଢେ । ଏହାର ପତ୍ର ବଡ଼ ବଡ଼ । ଅଣ୍ଡିରା ଫୁଲ ବଡ଼ ବଡ଼, ମାଈଫୁଲକୁ "କ୍ଲଷ୍ଟର ବେଣ୍ଟ" କୁହାଯାଏ । ଫଳ ୩ ଇଞ୍ଚରୁ ୯ ଇଞ୍ଚ ଲମ୍ବା ହୁଏ । ବଡ଼ କଲରାକୁ ସଲରା ମଧ୍ୟ କହନ୍ତି । କଲରା ରଙ୍ଗ ଗାଢ ଖାଗୁଆ

ନଚେତ୍ ହାଗିଦାନ୍ତ ପରି ଧଳା, ଚୋପା ବହଳିଆ। କଲରି ପାଚିଲେ ଫାଟିଯାଏ; ମଞ୍ଜି ଚାରି ଉପରେ ଲାଲ ମାଂସ ସହିତ ବାହାରି ପଡ଼େ।

**ଲଗାଇବା ସମୟ:—** (କ) ଛୋଟି କଲରା ଆଶ୍ୱିନ ମାସରୁ ମାର୍ଗଶୀର ମାସ ପର୍ଯ୍ୟନ୍ତ ଲଗାଯାଏ। ନଦୀ ପଠାରେ ଏହି କଲରା ଅଧିକ ପରିମାଣରେ ଚାଷ କରାଯାଏ। (ଖ) ବଡ଼ କଲରା ସାବିତ୍ରୀ ଅମାବାସ୍ୟା ପରେ ଏବଂ କାର୍ତ୍ତିକ ମାର୍ଗଶୀର ମାସରୁ ମାଘ ମାସ ଯାଏ ଲଗା ଯାଇଥାଏ।

**ଲଗାଇବା ପ୍ରଣାଳୀ:—** ମନ୍ଦା ଖୋଳି କଲରା ଲଗାଯାଏ। ଛୋଟି କଲରା ଲାଗି ୩ଫୁଟ × ୩ଫୁଟ ଏବଂ ବଡ଼ କଲରା ଲାଗି ୫ଫୁଟ × ୫ଫୁଟରେ ମନ୍ଦା କରିବ। ହାତେ ଚୌଡ଼ାରେ ମନ୍ଦା ଖୋଳି ମନ୍ଦା ମାଟିରେ ୨-୩ ସେର ଅନ୍ଦାଜରେ ପୁରୁଣା ଗୋବର ଖତ ଫେଣ୍ଟି ଦେବ। ଖତ ଗମିଯିବା ଲାଗି ମନ୍ଦାରେ ସାମାନ୍ୟ ପାଣି ଦେବ। ୪-୫ ଦିନ ପରେ ମନ୍ଦା ମାଟି ଖୁସାଇ ମଞ୍ଜି ଲଗାଇବ। ପଟୁପଡ଼ା ମାଟିରେ ଖତ ଦରକାର ପଡ଼େ ନାହିଁ।

ମନ୍ଦାଟିରେ ୩-୪ ଟି ମଞ୍ଜି ଲଗାଇ ପାଳ ଘୋଡ଼ାଇ ଦେବ। ପ୍ରତିଦିନ ମନ୍ଦାରେ ସାମାନ୍ୟ ପାଣି ଦେବ। ୮-୧୦ ଦିନ ମଧ୍ୟରେ ଗଛ ଉଠିଯାଏ।

**ଏକର ପ୍ରତି ମଞ୍ଜି:—** ଏକର ପ୍ରତି ଛୋଟି କଲରା ସେ ୧୪ ରରୁ ସେ୨ର ଏବଂ ବଡ଼ କଲରା ସେ୨ରୁ ସେ୨୪ର ଦରକାର ପଡ଼େ।

**ଖୁସାଖୋଳା ଓ ରଞ୍ଜା:—** ଲତାରେ ୫-୬ ଟି ପତ୍ର ହେବା ବେଳକୁ ତଗାଡ଼ ବାହାରେ। ଏହିକି ବେଳେ ମାଟି ଖୁସାଇ ମୁଥା, ଦୁବ ଓ ଅନ୍ୟାନ୍ୟ ଘାସ ବାଛି ପରିଷ୍କାର କରି ଦେବ। ବଡ଼ କଲରା ଲାଗି ୩-୪ ହାତ ଉଚ୍ଚା ବାଉଁଶର ରଞ୍ଜା ପୋତି ଦେବ। ରଞ୍ଜା ନ ଦେଇ ଭୂଇଁ ମଧ୍ୟ କରି ଯାଇପାରେ।

**ଖତ ପଡ଼ିଆ:—** ପଠା ଓ ପଚାପତ୍ର ମାଟିରେ ପିଡ଼ିଆ, ସାର ବ୍ୟବହାର କରାଯାଏ ନାହିଁ । ବଡ଼ କଲରାକୁ ମଦା ପ୍ରତି ଅଧପାଏ ପିଡ଼ିଆ ଓ ଅଧଛଟାଙ୍କି ଅମୋନିୟମ ସଲଫେଟ୍ ଦେବା ।

**ଫୁଲ ଫଳ:—** ଅଣ୍ଡିରା ଫୁଲ ପ୍ରଥମେ ଦେଖାଯାଏ । ଅଣ୍ଡିରା ଫୁଲ ଫୁଟିବା ପରେ ଯାହା ମାଈଫୁଲ ଦାଖାଏ । ଗର୍ଭକେଶର ମୂଳରେ ମହୁ ଝରୁଥିବା ଗୋଟା ଗ୍ରନ୍ଥି ( Gland ) ଅଛି । ଛୋଟ ଛୋଟ ମହୁମାଛି ଏହି ମହୁ ନେବା ବେଳେ ପରାଗ ସଙ୍ଗମ ଘଟେ ।

ଅଣ୍ଡିରାଫୁଲ ବଡ଼ ସକାଳୁ ଫୁଟେ, ଟାଣ ଖରା ବାଜିଲେ ମଉଳି ପଡ଼େ । ମାଈଫୁଲ ମଧ୍ୟ ବଡ଼ ସକାଳୁ ଫୁଟୁଥିବାରୁ ପରାଗ ସଙ୍ଗମ ସୁବିଧା ହୁଏ ।

**କଲରା ତୋଳିବା:—** ଗଛ ଉଠିବାର ଗୋମାସ ମଧ୍ୟରେ କଲରା ଫଳେ । ଛୋଟି କଲରା ପୌଷ ମାଘ ମାସରେ ଏବଂ ବଡ଼କଲରା ବୈଶାଖ ଜ୍ୟେଷ୍ଠ ମାସରେ ତୋଳାଯାଏ ।

**ଆମଦାନି:—** ଏକର ପ୍ରତି ଛୋଟି କଲରା ଗୋ° ମହଣ ।

—o—

# କାଙ୍କଡ଼

## ( କର୍କୋଟକୀ; ହିନ୍ଦ—କାକ୍ରୋଲ )

## MOMORDICA COCHINCHINESIS.

"କାଙ୍କଡ଼ ଧଇଲା କଷି
ମାଙ୍କଡ଼ ଛାଡୁଛି ଯାତରା ଦେଖି ରଙ୍ଗ ପାଲିଙ୍କିରେ ବସି" (ଶିଶୁଗୀତ)

କାଙ୍କଡ଼ ଗ୍ରୀଷ୍ମକଟିବନ୍ଧର ବଣୁଆ ଲଟା । ଓଡ଼ିଶାର ପାହାଡ଼ିଆ ଅଞ୍ଚଳର ବଣଜଙ୍ଗଲରେ ଏବଂ ନଦୀପଠାରେ କାଙ୍କଡ଼

ସାଧାରଣତଃ ଦେଖାଯାଏ । ଜ୍ୟେଷ୍ଠମାସର ବର୍ଷାପରେ ଲଟା ମାଡ଼ିବା ଆରମ୍ଭ ହୁଏ । ରଜ ସଂକ୍ରାନ୍ତି ପରେ ଫୁଲ ଓ ଫଳ ଧରେ । ସାଧାରଣତଃ ଶ୍ରାବଣ, ଭାଦ୍ର ମାସରେ କାଙ୍କଡ଼ ମିଳେ ।

କାଙ୍କଡ଼ ଲଟା ଗଛରେ ମାଡ଼େ । ଏହାର ଚେର କନ୍ଦମୂଳ ପରି ମୋଟା ଓ ହାଣ୍ଡୁଆ । ଲଟା ସରୁ କୋଣିଆ, ଚିକ୍କଣ ଏବଂ ଚେମଡ଼ା । ପତ୍ର ମଧ୍ୟ ବଡ଼ ବଡ଼ ଏବଂ ତିନି ଶିରା ବିଶିଷ୍ଟ । ଆକର୍ଷି ମୋଟା । ପତ୍ରର ନାଳି ଲମ୍ବ ଲମ୍ବ ।

ଅଣ୍ଡିରି ଏବଂ ମାଈ ଗଛ ଅଛି । ଅଣ୍ଡିରି ଫୁଲ ଗୋଟି ଗୋଟିକିଆ ଫୁଟେ । ପ୍ରହରୀ ପତ୍ର ଫୁଲଟିକୁ ଘୋଡ଼େଇ ରଖିଥାଏ । ଫୁଲର ରଙ୍ଗ ଦୁଧ ସର ପରି ଈଷତ୍ ହଳଦିଆ । ମାଈଫୁଲ ନାଳି ମଝିରେ ପ୍ରହରୀ ପତ୍ର ଥାଏ । ଫଳ ଉପରଟା ସାନ କଣ୍ଟା ପରି ଅଙ୍ଗରେ ପରିପୂର୍ଣ୍ଣ । ଫଳ କଞ୍ଚା ବେଳେ ଶାଗୁଆ ଥାଏ ଏବଂ ଲାଲ ହୋଇଯାଏ ।

**ପ୍ରସାରଃ—** କାଙ୍କଡ଼ ମଞ୍ଜି ଲଗାଯାଏ ନାହିଁ । ଚେର ଗଣ୍ଡି ଲଗାଯାଏ । ଅଣ୍ଡିରି ଏବଂ ମାଈ ଲଟା ଅଛି । ଦୁଇ ଜାତର ଲଟା ଏକ ଜାଗାରେ ନ ରହିଲେ ମାଈ ଲଟା ଫଳବତୀ ହୁଏ ନାହିଁ । ତେଣୁ ଅଣ୍ଡିରି ଏବଂ ମାଈ ଲଟାର ଗଣ୍ଡି ଏକାଠି ଲଗାଇବ । ଶହେଟି ମାଈ ଗଛ ପାଖରେ ପାଞ୍ଚୋଟି ଅଣ୍ଡିରି ଗଣ୍ଡି ଲଗାଯିବା ଦରକାର ।

**ଲଗାଇବାଃ—** ଉଚ୍ଚା ନିଗିଡ଼ା ଏବଂ ପଟୁପଡ଼ା ବାଲିଆ ମାଟିରେ କାଙ୍କଡ଼ ଭଲ ହୁଏ । ଜ୍ୟେଷ୍ଠମାସ ଆରମ୍ଭରେ ଅସରାଏ, ଦୁଇ ଅସରା ବର୍ଷା ପରେ ବଣ ଜଙ୍ଗଲରୁ ଲଟା ସହିତ ଗଣ୍ଡି ତାଡ଼ି ଆଣି ଲଗାଇବ । ହାତେ ଗହିରା ଓ ହାତେ ଓସାରଲେଇ କରି ଗାତ

ଖୋଳିବ । ସେହି ଗାତରୁ ବାହାର ଥିବା ମାଟିରେ ଏକ ଭାଗ ଗୋବର ଏବଂ ଏକ ଭାଗ ପାଜଂଗ ଫେଣ୍ଟି ଦେବ । ମାଟି ସାତ ଆଠ ଦିନ ରମିଯିବା ପରେ ଗଣ୍ଡ ଲଗାଇବ ।

**ପରବର୍ତ୍ତୀ ଯତ୍ନ:—** ଲଟା ହାତେ ଲମ୍ବ ହୋଇଗଲେ ଭଳିଆ ବା ଭଙ୍ଗା ଦେଇ ମଡ଼େଇବ । ଦଶ ଦିନରେ ମୂଳରୁ ଅନାବନା ଘାସ ବାଛି ସଫା ରଖିବ । ପ୍ରତି ମଦାରେ ମୁଠାଏ ହାଡ଼ଗୁଣ୍ଡି ଦେବ ।

**ଫୁଲ ଫଳ:—** ଶ୍ରୀଗୁଣ୍ଡି ଗୃହ ନଚେତ୍ ବାହୁଡ଼ା ଦଶମୀ ବେଳକୁ କାଙ୍କଡ ଲଟା ଫୁଲ ଧରେ । ବର୍ଷା ଅଧିକ ହେତୁ କୀଟ ପତଙ୍ଗ ଅଭାବ ହେବାରୁ ପରାଗ ସଙ୍ଗମ ହୁଏ ନାହିଁ । ଶ୍ରାବଣ ମାସରେ ଫଳ ତୋଳାଯାଏ ।

**ରୋଗ ଓ ଶତ୍ରୁ:—** ଫଳ କଷି ଥିବାବେଳେ ଏକ ପ୍ରକାର ପୋକ ବାହାରେ ଏବଂ ଅଣ୍ଡା ପାରେ । ଏହି ଅଣ୍ଡାରୁ ଗୋଟିପୋକ ବାହାର କାଙ୍କଡ଼ ନଷ୍ଟ କରି ଦିଅନ୍ତି । ଅଲୋକ ଯନ୍ତ୍ରରେ ଏହି ପତଙ୍ଗ ମରି ଯାଇପାରେ ।

**ଅଫଳନ୍ତ ଲଟାକୁ ଫଳେଇବା:—** ଲଟା ନ ଫଳିଲେ ଅଣ୍ଡିରି ଲଟା ବୋଲି ଜାଣିବ । ସେହି ଲଟା ବୁଢ଼ା ହୋଇ ମରି ଆସିବା ବେଳକୁ ବୁଦାରେ ନିଆଁ ଲଗାଇ ପୋଡ଼ିଦେବ । ପୋଡ଼ା ଚେରରୁ ବାହାରିବା ଲଟା ମାଈ ଲଟା ପାଲଟି ଯାଏ । ସେଥିରେ ଅରବର୍ଷକୁ ଫଳ ଧରେ । ଅଣ୍ଡିରି ଗଣ୍ଡକୁ ତାଜ ଓଲଟାଇ ଲଗାଇଲେ ବାହାରିବା ଲଟା ମାଈ ହୋଇଥାଏ ।

**କାଙ୍କଡ଼ରୁ ମଞ୍ଜି ପରିମାଣ କମାଇବା:—** କାଙ୍କଡ଼ ଅତି ଉପାଦେୟ ପରିବା । ମ.ଜ ମଞ୍ଜି ପରିମାଣ ଏତେ ଅଧିକ ଯେ ଏହା

କାଙ୍କଡ଼ର ଉତ୍ପାଦେୟତା କମାଇ ଦିଏ । 'ନାପଥାଲିନ୍ ଅସେଟିକ ଅସିଡ୍' 'ଅକ୍ସିନ' ବା 'ହର୍ମନ'କୁ ଫୁଲ୍ କଟ ଅବସ୍ଥାରେ ପିଚକାରି ଦେଲେ କାଙ୍କଡ଼ରୁ ମଞ୍ଜି କମିଯିବ ।

**କାଙ୍କଡ଼ ବିକ୍ରୀ ବ୍ୟବସ୍ଥା:—** ଓଡ଼ିଶାରେ କାଙ୍କଡ଼ ବଣିଜାତ ପରିବା । ଶ୍ରାବଣ ଭାଦ୍ର ମାସରେ ସଅର ଓ ଅନ୍ୟାନ୍ୟ ଅଧିବାସୀ କାଙ୍କଡ ତୋଳି ବେପାରୀଙ୍କୁ ବିକ୍ରୀ କରନ୍ତି । ବେପାରୀ ଅଖା ବା ଟୋକେଇରେ ଭର୍ତ୍ତି କରି ସହରମାନଙ୍କୁ ପଠାନ୍ତି । ଅଖା ଏବଂ ଟୋକେଇରେ ଭରି ହୋଇ ରହିବା ଦ୍ୱାରା ବହୁତ ଗରମ ବାହାରେ । ଏହି ଗରମ ହେତୁ ଶତକଡ଼ା ୨୦-୨୫ ଭାଗ କାଙ୍କଡ଼ ପାଚି ହଳଦିଆ ପଡ଼ିଯାଏ ବା ପାଚିଯାଏ । ପବନ ଗତାଗତ କରୁଥିବା ଟୋକେଇ ବା ଥଣ୍ଡା ଡବାରେ କାଙ୍କଡ ଚାଲାଣି କଲେ କାଙ୍କଡ଼ ନଷ୍ଟ ହୁଏ ନାହିଁ ।

---

# ପୋଟଳ

# POTAL

## TRICHOSANTHES DIOICA

### N. O. CUCURBITACEAE

ଫଳ ମଧ୍ୟରେ କଦଳୀ ପରି ପନି ପରିବା ମଧ୍ୟରେ ପୋଟଳର ଆଦର ଅଧିକ । ଏହାକୁ ପରିବା ସମ୍ରାଟ କୁହାଯାଇ ପାରେ । ପୋଟଳ ଭଜା ଏବଂ ଝୋଳ ଯୋଗର ଖାଦ୍ୟ ରୁଚିକ ଏବଂ କ୍ଷୁଧା ଉଦ୍ଦୀପକ, ସେହିପରି ମଧ୍ୟ ରୋଗୀ ଏବଂ ରୋଗରୁ ଉଠିଥିବା ଲୋକର ସୁସମ ପଥ୍ୟ ।

ପୋଟଳ ଗଛ ଗଙ୍ଗାନଦୀର ସମତଳ ଭୂମିରେ ବିଶେଷତଃ ବଙ୍ଗ ଦେଶରେ ବିଶେଷ ପରିମାଣରେ ଲଗାଯାଏ । ସରକାରୀ କୃଷି ବିଭାଗ ପୋଟଳ ଗଛ ପ୍ରଥମେ ଓଡ଼ିଶାର ସରକାରୀ ଫାର୍ମରେ ଆରମ୍ଭ କରିଥିଲେ ଏବଂ ଖ୍ରୀ ୧୨୨୦ ମସିହାରେ କୃଷୀମାନଙ୍କ ମଧ୍ୟରେ ପ୍ରସାର କରାଇଲେ । ଖ୍ରୀ ୧୯୩୦ ମସିହାଠାରୁ ପୋଟଳ ଗଛ କଟକ ଜିଲ୍ଲାରେ ବ୍ୟାପିବାକୁ ଆରମ୍ଭ କଲା ।

**ଲଗାଇବା ସମୟ:—** କାର୍ତ୍ତିକ ମାସରୁ ମାଘ ମାସ ଶେଷ ପର୍ଯ୍ୟନ୍ତ ପୋଟଳ ଲଗା ଯାଇପାରେ; କିନ୍ତୁ ଯେତେ ଆଗରୁ ଲଗାଇବ ବର୍ଷା ଋତୁ ଆରମ୍ଭ ପୂର୍ବରୁ ସେତେ ଅଧିକ ସମୟ ଫଳ ପାଇ ପାରିବ । ଧାରା ଶ୍ରାବଣ ଆରମ୍ଭ ହେଲେ ପୋଟଳ ଫଳିବା କମିଯାଏ ।

**ମାଟି:—** ପୋଟଳ ଗଛ ଲାଗି ପଟୁ ମାଟି ଉତ୍କୃଷ୍ଟ । ଅତି ପଙ୍କୁଆ ବା ଅତି ବାଲିଆ ମାଟି ଏବଂ ରୁଗୁଡ଼ିଆ ଲାଲ୍ ମାଟି ପୋଟଳ ପକ୍ଷରେ ଅନୁପଯୁକ୍ତ । ଦୋରସା ମାଟିରେ ଯେଉଁ ପୋଟଳ ହୁଏ ତାହା ପଟୁ ମାଟିରେ ଫଳୁଥିବା ପୋଟଳ ଅପେକ୍ଷା ଅଧିକ ସ୍ୱାଦୁ ।

ଉଚ୍ଚା ନାଳିଡ଼ା ଜମି ପୋଟଳ ଲାଗି ଭଲ୍ । ସନ୍ତସନ୍ତିଆ ବା ଗାଳୁଆ ଜମିରେ ପୋଟଳ ଲଟା ପଚିଯାଏ ।

**ଜମି ତିଆରି:—** ମୁଥାମୂଳ ପୋଟଳ ଫସଲର ପ୍ରଧାନ ଶତ୍ରୁ । ତେଣୁ ଜମିକୁ ତିନି ଚାରି ଓଡ଼ ଚାଷ କରି ମଇ ଦେଇ ମାଟି ଗୁଣ୍ଡ କରିଦେବ । ନଈବଢି ମଡ଼ା ବା ପଟୁପଡା ଜମିରେ ଚାଷ ଦରକାର ପଡେ ନାହିଁ ।

**ମଣ୍ଡା ଖୋଳା:—** ପ୍ରତି ଛଅଫୁଟ ଅନ୍ତରରେ ହାତେ ଗଭୀର ଅଧ ହାତେ ଗୋଲେଇ କରି ମଣ୍ଡା ଖୋଳିବ । ଦୋରସା ମାଟିରେ

ମନ୍ଦା ପ୍ରତି ପୁରୁଣା ଗୋବର ଖତ ଅଥବା କମ୍ପୋଷ୍ଟ ଖତ ଦୋଟକରଇଏ ଏବଂ ଅଧସେର ପିଢ଼ଅ ଫେଣ୍ଟିଦେବ । ଖତ ପିଢ଼ଅ ଗମିବା ଲାଗି ଦୁଇ ତିନି ଦିନ ମାଟିଅରେ ପାଣି ଦେବ ।

ପଟୁଚଡ଼ା ଜମିରେ ଖତ ଓ ପିଢ଼ଅ ପୋଟଳ ଲଗାଯିବା ପୂର୍ବରୁ ଦେବାକୁ ପଡ଼େ ନାହିଁ ।

**ପୋଟଳ ଲଗାଇବା :—** ପୋଟଳ ଚେର ଲଗାଯାଏ । ଏହି ଚେରକୁ 'ଗଣ୍ଡି' ବା 'ଗଣ୍ଡି' କହୁଥାନ୍ତି । ପ୍ରତି ମନ୍ଦାରେ ଗୁଖଣ୍ଡେ ଛଡ଼ାରେ ତିନି ଗୁଟିଏ ଗଣ୍ଡି ଲଗାଇବ । ଅତି ମୋଟ ବା ଅତି ସରୁ ଗଣ୍ଡି ନ ଲଗାଇ ମଧ୍ୟମ ଆକାରର ଗଣ୍ଡି ଲଗାଇବ । ପ୍ରତ୍ୟେକ ଗଣ୍ଡି ପାଞ୍ଚ-ଛଅ ଅଙ୍ଗୁଳି ଲମ୍ବା ରହିବା ଦରକାର । ଗଜା ଥିବା ଅଂଶକୁ ମାଟି ଉପରକୁ ଅଧ ଅଙ୍ଗୁଳିଏ ରଖି ଲଗାଇବ । ଗଣ୍ଡିକୁ ମାଟି ଭିତରେ ଭଲରୂପେ ଦାବିଦେବ । ଗଣ୍ଡି ଲଗା ଶେଷ କରି ମନ୍ଦାକୁ ପାଳରେ ଘୋଡାଇ ଦେବ । କାରଣ ନ ଘୋଡ଼ାଇଲେ ଗଣ୍ଡି ଅଗ ଶୁଖି ମୋଡ଼ି ହୋଇ ପଡ଼ିବ । ଗଛ ଆଉ ବାହାରିବ ନାହିଁ ।

**ଏକର ପ୍ରତି ଗଣ୍ଡିର ପରିମାଣ :—** ଏକ ଏକର ଜମିରେ ପ୍ରାୟ ୧,୨୦୦ ମନ୍ଦା ଲଗାଯାଏ । ମନ୍ଦାପ୍ରତି ତିନୋଟି ଗଣ୍ଡି ଲଗାଇଲେ ୩୦ ସେର ଏବଂ ଗୁଟିଏ ଗଣ୍ଡି ଲଗାଇଲେ ଏକ ମହଣ ଗଣ୍ଡି ଦରକାର ପଡ଼େ ।

**ଅଣ୍ଡିରା ଓ ମାଈ ଗଣ୍ଡି :—** ଅଣ୍ଡିରା ଆଉ ମାଈ ଜାତର ପୋଟଳ ଗଛ ଅଛି । ଅଣ୍ଡିରା ଲଟାରେ କେବଳ ଅଣ୍ଡିରା ଫୁଲ ଫୁଟେ ଏବଂ ମାଈ ଲଟାରେ ଫଳ ଧରେ । ସୁତରାଂ ଅଣ୍ଡିରା ଗଛରୁ ଗଣ୍ଡି ନେଇ ଲଗାଇଲେ କେବଳ ଅଣ୍ଡିରା ଲଟା ମାଡ଼ିବ, ସେଥିରେ ଆଦୌ ପୋଟଳ ଫଳିବ ନାହିଁ । କେବଳ ମାଈଲଟାରୁ ଗଣ୍ଡି ନେଇ

ଲଗାଇଲେ ମଧ୍ୟ ମାଈଫୁଲ ଅଣ୍ଡିରା ଫୁଲ ଅଭାବରେ ମଉଳି ଝଡ଼ି ପଡ଼ିବ । ଅଣ୍ଡିରା ଫୁଲ ଓ ମାଈଫୁଲ ମଧ୍ୟରେ ଯୌନ-ସମ୍ମିଳନ ନ ହେଲେ ପୋଟଳ କଷିବେକ୍ତ ଝଡ଼ି ପଡ଼ିବ । ପ୍ରତି ଶହେଟା ମାଈ ଗଛ ମଧ୍ୟରେ ପାଞ୍ଚୋଟି ଅଣ୍ଡିରା ଗଛ ରହିବା ଦରକାର । ଅଣ୍ଡିରା ଗଣ୍ଡି ମୋଟା ଏବଂ ଚେର ପାଖ କାଣି ଅଙ୍ଗୁଠି ଅଗ ପରି । ମାଈ ଗଣ୍ଡି ସରୁଆ ଏବଂ ଚେର ପାଖ ଚୋଞ୍ଚିଆ ।

**ଲଗାଇବା ପରେ ଯତ୍ନ :—** ଗଣ୍ଡି ଲଗାଯିବା ପରେ ମାଠିଆ ବା ଡେଣ୍ଡାରେ ପାଣି ଦେଇ ମଦା ଓଦା ରଖିବ । ଅଧିକ ଓଦା ରହିଲେ ଗଣ୍ଡି ପଚିଯାଏ । ମାଟିରୁ ଓଦା ଶୁଖିଗଲେ ଗଣ୍ଡି ଶୁଖିଯାଏ ।

ଲଗାଯିବାର ୧୫ଦିନ ମଧ୍ୟରେ ଗଣ୍ଡିରୁ ଗଛ ମୁନେଇ ଆସେ । ଲଟା ବାହାର ଦୁଇ-ତିନି ଅଙ୍ଗୁଳ ହୋଇଗଲେ ମଦାରୁ ପାଳ କାଢି ପକାଇବ ।

ପୋଟଳ ଲଟା ଗୁଡ଼ାଏ ଲମ୍ବ ହୋଇଗଲେ କିଆରୀକୁ ଭଲରୂପେ କୋଡ଼ ଦେଇ ମୁଥାମୂଳ ବାହାର କରିଦେବ । ଅଠ-ଦଶ ଦିନ ପରେ ଆଉ ଗୋଟିଏ କୋଡ ଦେଇ ମଦା ପ୍ରତି ଗ୍ରାମ ଛଟାଙ୍କି ପିଡ଼ିଆ ଏବଂ ଏକ ଛଟାଙ୍କି ଅମୋନିୟମ୍ ସଲଫେଟ୍ ଦେବ । ପିଡ଼ିଆ ଗମିବା ଲାଗି ପାଣି ମଡ଼େଇ ଦେବ ।

ପୋଟଳ ଲଟା ହାତେ ପର୍ଯ୍ୟନ୍ତ ଡ଼େଙ୍ଗେଇ ଗଲେ ପ୍ରତି ଦୁଇଧାଡି ମଦାକୁ ଗୋଟିଏ ପଟିରେ ରଖି ନାଳ କାଢିବ । ନାଳ ମାଟି ପଟି ମଝିରେ ପକାଇ ଉଚ୍ଚାକରି ଦେବ ଏବଂ ଦୁଇ ପାଖକୁ ଗଡ଼ାଣିଆ କରିଦେବ । ଗୋଟିଏ ନାଳରୁ ଅନ୍ୟ ନାଳ ପର୍ଯ୍ୟନ୍ତ ପଟାଳିଟି ୧୦-୧୨ ଫୁଟ ଚଉଡା ରହିବ ।

ପଟାଳି ଏବଂ ନାଳି ହେତୁ ଖରାଦିନରେ ମଡ଼ାଯାଉଥିବା ପାଣି ଗଛମୂଳକୁ ସହଜରେ ପହଞ୍ଚି ପାରିବ ଏବଂ ବର୍ଷାଦିନରେ ବର୍ଷାପାଣି ସହଜରେ ଗଡ଼ି ଚାଲିଯିବ ।

ଚୈତ୍ର ମାସ ସୁଦ୍ଧା ପଟାଳି ମଝିରେ ଧାଡ଼ିଏ ଖୁଣ୍ଟି ପକାଇ ଦେବ । ଖୁଣ୍ଟି ରଞ୍ଜା ରୂପେ କାର୍ଯ୍ୟ କରିବ । ପୋଟଳ ଲଟା ଏହି ରଞ୍ଜା ଉପରେ ଲଟେଇବ । ତେଣୁ ତଳର ମାଟିରେ ଛୁଇଁ ଯିବାର ଆଶଙ୍କା ନ ଥିବ ।

ବୈଶାଖ-ଜ୍ୟେଷ୍ଠ ମାସରେ ପଟାଳିର ମାଟିକୁ ଖୁରେଇ ମୁଥା ଓ ଦୁବ ଘାସ ବାଛି କିଆରୀ ପରିଷ୍କାର ରଖିବ । ମାଟି ହାଲୁକା ରହିଲେ ଲଟା ମାଟିଉପରେ ଲଟେଇବା ବେଳେ ଗଣ୍ଠିରୁ ଚେର ବାହାରିବ ଏବଂ ଆସନ୍ତା ବର୍ଷ ଲାଗି ପ୍ରଚୁର ଗଣ୍ଡି ମିଳିବ ।

**ଫଳ ଶୁଖିଯିବା :—** ଅଣ୍ଡିରା ଓ ମାଈଫୁଲର ଯୌନ-ମିଳନ ପରେ ଫଳ ବଢ଼େ ଏବଂ ପୋଟଳ ତୋଳାଯାଏ । ପୋଟଳ କ୍ଷେତରେ ଅଣ୍ଡିରା ଗଛ ନ ଥିଲେ ଏହି ଯୌନ ମିଳନ ସମ୍ଭବ ହୋଇ ପାରେ ନାହିଁ । ପୋଟଳ ଡଙ୍କରୁ ଫଳ ଶୁଖି ଝଡ଼ି ପଡ଼ିଲେ କ୍ଷେତରେ ଅଣ୍ଡିରା ଲଟା ନ ଥିବା ଜାଣିବ । ଅନ୍ୟକ୍ଷେତରୁ ଅଣ୍ଡିରା ଲଟାଗଣ୍ଡି ଆଣି ଲଗାଇବ । ଫୁଲ ଦେଖି ଅଣ୍ଡିରା ମାଈଗଛ ଚିହ୍ନିବ । ଅଣ୍ଡିରା ଫୁଲରେ ଗର୍ଭାଧାନ ବା ଫଳ ଲାଗି ନ ଥାଏ ।

ଯୌନ-ମିଳନ କାର୍ଯ୍ୟ କୀଟ ପତଙ୍ଗ ଦ୍ୱାରା ଘଟେ । ପୋଟଳ କିଆରୀ ପାଖରେ କୁନ୍ଦୁରି ଲଟାଥିଲେ କୀଟ ପତଙ୍ଗ କୁନ୍ଦୁରି ଫୁଲକୁ ଆସିଯାନ୍ତି । ପୋଟଳ ଫୁଲରେ ଯୌନ ମିଳନ

କାର୍ଯ୍ୟ ସୁରୁଖୁରୁରେ ହୋଇପାରେ ନାହିଁ । କୁନ୍ଦୁରୁ ପରାଗ ରେଣୁ ପୋଟଳ ଫୁଲ ଫଳ ପକ୍ଷରେ ଷତିକାରକ ।

ମାଟିରେ ଫସ୍‌ଫରସ୍ ଉପାଦାନ ଅଭାବ ହେଲେ ଫୁଲ ଅସେ ନାହିଁ ଏବଂ ପୋଟାସ୍ ଅଭାବ ହେଲେ ଲଟି ଶୁଖିଯାଏ । ମନ୍ଦାପ୍ରତି ମୁଠାଏ ହାଡ଼ଗୁଣ୍ଡି କିଂବା ଏକସେର ଘସି ଅଥବା କାଠ ପାଉଁଶ ଦେବ ।

**ଲିଙ୍ଗ ପରିବର୍ତ୍ତନ :—** ଅଣ୍ଡିରା ଲଟା ପୋଟଳ ଧରେ ନାହିଁ । କିନ୍ତୁ ସେହି ଅଣ୍ଡିରା ଲଟାର ଅଗପାଖ ଦୁଇତିନି ଗଣ୍ଠି ପୋତି ପକାଇଲେ ନୂଆ ଲଟା ଗୁଡ଼ିକ ମାଈ ହୋଇ ଯାଇଥାଏ ।

**ପୋଟଳ ଫଳିବା :—** ଶ୍ରୀପଞ୍ଚମୀ ପରେ ପୋଟଳ ଫଳିବା ଆରମ୍ଭ ହୁଏ । ଶ୍ରାବଣମାସ ପର୍ଯ୍ୟନ୍ତ ଫଳ ଲଟା ବୁଢା ହୋଇଯାଏ । ଦଶହରା ପରେ ଫଳିବା ପୋଟଳ ଶ୍ୱେତସାର ଅଭାବରୁ ପାଣିଚିଆ ଓ ଅସ୍ୱାଦୁକର ହୋଇଥାଏ ।

**ଦ୍ୱିତୀୟ ବର୍ଷ ଫସଲ ଲାଗି ଯତ୍ନ:—** ପୋଟଳ ଗୋଟିଏ ସ୍ଥାନରେ ଦୁଇ ବର୍ଷ ରହେ । ଦଶହରାପରେ ମଲ୍ଲ ଲଟାଗୁଡ଼ିକୁ କାଟି ପକେଇବ । ଦୋରସା ମାଟିରେ ଏକର ପ୍ରତି କୋଡ଼ିଏ ଗାଡ଼ି ଖତ, ପାଞ୍ଚମହଣ ପିଡ଼ିଆ ଏବଂ ତିନି ମହଣ ହାଡ଼ଗୁଣ୍ଡ ବିଛେଇ ଦେବ । ଦାନ୍ତିଆ ବା କୋଡ଼ରେ ମାଟିକୁ ଖୁସେଇ ଦେବ । ପ୍ରତି ଛଅ ଫୁଟ ମଧ୍ୟରେ ଥିବା ଗଣ୍ଡିଗୁଡ଼ିକୁ ଉପାଡ଼ି ଦେବ । ଗତ ବର୍ଷର ମନ୍ଦାରୁ ଗୋଟିଏ ପୁରୁଣା ଗଣ୍ଡିକୁ ଛାଡ଼ି ଅବଶିଷ୍ଟ ଗୁଡ଼ିକ ଉପାଡ଼ିଦେବ ।

## ପୋଟଳ ବୃଷର ଏକର ପ୍ରତି ଆୟ ବ୍ୟୟ ହିସାବ

| କାର୍ଯ୍ୟର ବିବରଣ | ମୂଲ | | |
|---|---|---|---|
| | ପୁ: | ସ୍ତ୍ରୀ: | ବା: |
| **ଜମି ତିଆରି:—** (କ) କାର୍ତ୍ତିକ ମାସରେ ୪ ଓଡ଼ ଚଷ (ଖ) ଘାସ ବଛାବଛି | | | |
| **ମଣ୍ଡା ଖୋଳିବା:-** ଏକର ପ୍ରତି ୧,୦୦୦ ମଣ୍ଡା ଜଣେ ଲୋକ ଦିନକୁ ୪୦ଟି ମଣ୍ଡା ଖୋଳିପାରେ | ୨୫ | | |
| **ମଣ୍ଡା ତିଆରି:—** (କ) ଖତପିଣ୍ଡିଆ ମିଶାଇବା | ୧୬ | | |
| (ଖ) ଖତପିଣ୍ଡିଆ ଦେବା | | ୫ | |
| (ଗ) ଖତ ଗମିବା ଲାଗି ପାଣିଦେବା— ଗୋଟିଏ ସ୍ତ୍ରୀଲୋକ ୨୦୦ ମଣ୍ଡାରେ ମାଠିଆ ପାଣି ଦେଇ ପାରେ । ୨ ଥର ପାଣିଦେବା ଦରକାର । | | ୧୦ | |
| **ପୋଟଳ ଗଣ୍ଡି ଲଗାଇବା:—** (କ) ମଣ୍ଡା ଖୁସାଇ ମାଟି ଓଲଟ ପାଲଟ କରିବା | ୨ | | |
| (ଖ) ଗଣ୍ଡି ଲଗାଇବା | ୪ | | |
| (ଗ) ପାଳ ଘୋଡ଼ାଇବା | | ୫ | |
| (ଘ) ଗଛ ଝଡ଼ିବା ପରେ ପାଳ କାଢିବା । | | | ୨ |
| **ଖୁସାକୋଡା:—** (କ) ଜମି କୋଡ଼ିବା | ୧୬ | | |
| (ଖ) ପଟି ତିଆରି କରି ପଟି ଗଡ଼ାଣିଆ କରିବା । | ୨ | | |
| **ଘାସବଛା—** (କ) ଜ୍ୟୈଷ୍ଠମାସରେ | | ୧୦ | |
| (ଖ) ପହିଲି ଅଷାଢ଼ | | ୧୦ | |
| (ଗ) ଶ୍ରାବଣ | | ୧୦ | |
| (ଘ) ଭାଦ୍ର | | ୧୦ | |
| | ୮୫ | ୬୦ | ୨ |

| କାର୍ଯ୍ୟର ବିବରଣୀ | ମୂଲ ପୁ: | ମୂଲ ସ୍ତ୍ରୀ | ମୂଲ ବା: | ଅନ୍ୟା: |
| --- | --- | --- | --- | --- |
| **ପାଣିଦେବା:—** (କ) ପୋଟଲ ଗଣ୍ଠି ଲଗାଇ ଗଛ ଉଠିବା ପର୍ଯ୍ୟନ୍ତ ୪ଥର ମାଠିଆ ପାଣି ଥରକେ ୫ଜଣ ସ୍ତ୍ରୀ | ୮୫ | ୬୦ | ୨ | |
| (ଖ) ପୌଷ ମାସରୁ ଜ୍ୟେଷ୍ଠ ମାସ ଅଧ ପର୍ଯ୍ୟନ୍ତ ମାସକୁ ୩-୪ଥର ପାଣି ମଡ଼ାଇବାକୁ ପଡ଼େ । ହାରାହାରି ୧୫ଥର ମଡ଼ାପାଣି ଦରକାର । ଟେଣ୍ଡାଦ୍ୱାରା ପାଣି ମଡ଼ାଗଲେ ଥରକେ ୬ଜଣ ଦରକାର | ୯୦ | | | |
| **ପୋଟଲ ତୋଳା ଓ ବନ୍ଧୀ** | ୨୫ | ୨୦ | ୮ | |
| | ୨୦୦ | ୮୦ | ୧୦ | ଟ୨୭୦ |
| **ପୋଟଲ ଗଣ୍ଠି ଖତପିଢ଼ିଆ:—** ୩୦ସେର (କ) ଗୋବର ଖତ ୧୦ଗାଡ଼ି (ଖ) ପିଡ଼ିଆ ୮ ମହଣ (ଗ) ଅମୋନିୟମ ସଲଫେଟ ୨ ମହଣ (ଘ) ହାଡ଼ଗୁଣ୍ଡି ୨ ମହଣ ( ଚଠା ଓ ପଟୁମାଟିରେ ଏ ସମସ୍ତ ଦେବାକୁ ପଡେ ନାହିଁ ) | | | | ଟ୧୨୦ |
| **ପୋଟଲ ବନ୍ଧୀ—** ଅଉଭଦାର | | | | ଟ୧୦୦ |
| **ଜମି ଖଜଣା—** | | | | ଟ୧୦ |
| **ଅନ୍ୟାନ୍ୟଖର୍ଚ୍ଚ—** | | | | ଟ୫୦ |
| ମୋଟଖର୍ଚ୍ଚ | | | | ଟ୫୫୦ |

## ଆଦାୟ

| ମାସ | ଅନୁମାନିକ ଅମଦାନି | ଅନୁମାନିକ ମୂଲ୍ୟ |
|---|---|---|
| ଫାଲ୍ଗୁନ | ୨ ମହଣ | ଟ୮୦୵ |
| ଚୈତ୍ର | ୬ ,, | ଟ୧୨୦୵ |
| ବୈଶାଖ | ୮ ,, | ଟ୧୨୦୵ |
| ଜ୍ୟେଷ୍ଠ | ୧୦ ,, | ଟ୧୫୦୵ |
| ଅଷାଢ଼ | ୧୦ ,, | ଟ୧୫୦୵ |
| ଶ୍ରାବଣ | ୭ ,, | ଟ୧୪୦୵ |
| ଭାଦ୍ର | ୫ ,, | ଟ୧୫୦୵ |
| ଆଶ୍ୱିନ | ୨ ,, | ଟ ୬୦୵ |
| ମୋଟ | ୫୦ ମହଣ | ଟ୯୭୦୵ |

ମୋଟ ଅଦାୟ ଟ୯୭୦୵
ମୋଟ ଖର୍ଚ୍ଚ ଟ୫୫୦୵

ଏକର ପ୍ରତି ଲାଭ ଟ୪୨୦୵

—*-*—

## ସୂଚନା


1. Das M. C. 1933

Chromosome number and development of embryosac in Trichosanthes dioica.

Proc. 20th. Indian Sci Congress. 313

2. Banerjee I and Das M. C. 1937

The development of the microspores in Trichosanthes dioica.

Ind. Jous. Agri Sci. 7 :497—510

# ଛଚିନ୍ଦା

( ସଂସ୍କୃତ-ଛଚିନ୍ଦା, ହିନ୍ଦି-ପଟଲ, ଚିଚିଙ୍ଗା )

## SNAKE GOURD

## TRICHOSANTHES ANGUINA

ଛଚିନ୍ଦା କେବଳ ଭାରତବର୍ଷରେ ନୁହେଁ, ଚୀନ୍‌ଦେଶ ଏବଂ ମାଳୟରେ ମଧ୍ୟ ଚାଷ କରାଯାଏ ।

ଛଚିନ୍ଦା ବର୍ଷାଦିନିଆ ଫସଲ । ଚୈତ୍ରମାସରୁ ଜ୍ୟେଷ୍ଠ ମାସ ପର୍ଯ୍ୟନ୍ତ ଲଗାଯାଇ ପାରେ ।

**ଲଗାଇବା ପ୍ରଣାଳୀ :—** ଛଅ ଫୁଟ ଅନ୍ତରରେ ଧାଡ଼ି କରିବ । ପ୍ରତି ଧାଡିରେ ତିନି ଫୁଟ ଅନ୍ତରରେ ମନ୍ଦା ଖୋଳିବ । ମନ୍ଦା ମାଟିରେ ଏକଭାଗ ଗୋବରଖତ, ପାଉଁଶ ଏବଂ ଅଧପାଏ ପିଡ଼ିଆ ଫେଣ୍ଟିଦେବ । ମନ୍ଦାରେ ପାଣିଦେଇ ମାଟିକୁ ଏକସପ୍ତାହ ଗଡେଇବା ପରେ ମଞ୍ଜି ଲଗାଇବ ।

**ଏକର ପ୍ରତି ମଞ୍ଜି :—** ମନ୍ଦାଟିରେ ତିନି ଗୋଟି ମଞ୍ଜି ଲଗାଇ ପାଳ ଘୋଡାଇ ପାଣି ଦେବ । ଏକର ପ୍ରତି ଦେଢ଼ସେର ମଞ୍ଜି ଦରକାର ପଡ଼େ ।

**ମଞ୍ଚା ବା ଭାଡ଼ି :—** ଛଅ ସାତ ଫୁଟ ଉଚ୍ଚରେ ଭାଡ଼ି କରି ଲଟାକୁ ମଡ଼େଇବ । ଗଛ ଲଗାଯିବାର ଦୁଇ ଅଢ଼େଇ ମାସରେ ଫୁଲ ଓ ଫଳ ଆସେ । ଛଚିନ୍ଦା ୫-୬ ଇଞ୍ଚ ଲମ୍ବ ହେବା ବେଳକୁ ତାର ଅଗରେ ଖଣ୍ଡେ ଡୋର ବାନ୍ଧିଦେବ । ଡୋର ଅଗରେ ଫଳ ସହିବା ଭଳି ଖଣ୍ଡେ ଇଟା, ଢେଲିଆ ବା ପଥର ବାନ୍ଧିଦେବ । ଏହାଦ୍ୱାରା ଛଚିନ୍ଦା ସଳଖରେ ବଢେ । ଓଜନ ଝୁଲାଇ ଅଗରେ ନ ବାନ୍ଧିଲେ ଛଚିନ୍ଦା ମୋଡ଼ି ମୋଡ଼ି ହୋଇ ଭଲ ବଢେନାହିଁ ।

**ଆମଦାନି :—** ପ୍ରାୟ ପାଞ୍ଚ ସପ୍ତାହ ପର୍ଯ୍ୟନ୍ତ ଛଚିନ୍ଦା ତୋଳା ଯାଏ । ଏକ ସେଣ୍ଟ ଜମିରୁ ୧୦୦ଟା ଛଚିନ୍ଦା ଫଳେ । ଗୋଟିଏ ଛଚିନ୍ଦା ଅଧସେରରୁ ଦୁଇ ସେର୍ ଓଜନ ହୁଏ ।

ଛଚିନ୍ଦା ବାଡ଼ ବର୍ଷିଷ୍ଟରେ ଗୁଣ୍ଠେ ଦୁଇ ଗୁଣ୍ଠ ଜମିରୁ ଅଧିକା ଲଗାଯାଏ ନାହିଁ ।

**ଫସଲରକ୍ଷା :—** ଫଳ ବିନ୍ଧା ପୋକ ( Pulsia peponis ) ଗୋଟିଏ ଅତି ସରୁଆ ଶାଗୁଆ ପୋକ ଫଳକୁ ଗୁଡ଼େଇ ଫଟକର ଥାଏ ଏବଂ ସେହି ଖିଲ ଭିତରେ ରହି ଫଳକୁ ଖାଇ ଯାଏ । ଫଳ ଚଳି ଯିବାରୁ ଗଛ ଥୁଣ୍ଟା ଧରି ଯାଏ ।

ଛଚିନ୍ଦା ଫଳ ବିନ୍ଧା ଦେଖିଲେ ଦୁଇ ଅଙ୍ଗୁଠିରେ ଖିଲ୍ ଜୋରରେ ଚିପିଦେବ । ଖିଲ ଭିତରେ ଗୋଟି ପୋକ ମରିଯିବ ।

# ପୋଡଲ

## ( ହିନ୍ଦି-ପରଭର, ପଭଲ, ବଙ୍ଗଳା-ଚିଚିଣ୍ଡା )

## TRICHOSANTHES CUCUMERINA

ଗଞ୍ଜାମ ଜିଲ୍ଲା, ବାଲି ଗୁଡ଼ା, ଉଦୟ ଗିରି ଓ ବରହମ୍ପୁର ପ୍ରଭୃତି ଅଞ୍ଚଳରେ ଛଚିନ୍ଦା ପରି ଫଳକୁ 'ପୋଡଲ' କହନ୍ତି । ଏହା ପ୍ରାୟ ହାତେ ଲମ୍ବା ଓ ତିନି ଚାରି ଇଞ୍ଚ ମୋଟ ହୁଏ । ଚୋପା ଶାଗୁଆ ଓ ଧଳା ଧଳା ପଟିଥାଏ । ଏହା ବୈଶାଖ ମାସରେ ମିଳେ । ଏହି ପୋଡଲ ଗଛ ଛଚିନ୍ଦା ଗଛପରି ।

# କୁନ୍ଦୁରି

## କୁନ୍ଦରକୀ, ମଣ୍ଟକା ଫଳ

( ଫସ୍ତୁ-ବିମ୍ବିକା )

## COCCINIA INDICA

କୁନ୍ଦୁରି ଲଉଅ କାକୁଡ଼ି ଶ୍ରେଣୀର ଫଳ । ଲଟା ବହୁତ ମାଡ଼େ । ପତ୍ର ତରକାରି କରି ହୁଏ ନାହିଁ, କେବଳ କୁନ୍ଦୁରି ଫଳ କଞ୍ଚା ଖାଇ ହୁଏ ଏବଂ ତରକାରି ହୁଏ । କୁନ୍ଦୁରି ଫଳ ଶାଦା, ମଞ୍ଜିଗୁଡ଼ିକ ଛୋଟ ସରୁଆ ଏବଂ ଚେପ୍ଟା । ବର୍ଷ ସାରା ଫଳେ । ଫଳ ପାଚିଗଲେ ଉପର ଏବଂ ଭିତର ଲାଲ ହୋଇଯାଏ କୁନ୍ଦୁରି ଭଜା ବା ରନ୍ଧାଗଲେ ସାମାନ୍ୟ ମିଠା ଲାଗେ ।

**ଲଗାଇବା ପ୍ରଣାଳୀ** :— କୁନ୍ଦୁରି ଲଟା ଲଗାଯାଏ । ହାତେ ଗୋଲେଇ ଓ ହାତେ ଗହୀରାରେ ମଦା ଖୋଳିବ । ସେହି ମାଟିରେ ଏକ ଭାଗ ପୁରୁଣା ଖତ ମିଶାଇ ପାଣି ଦେଇ ସାତ ଆଠ ଦିନ ଛାଡ଼ି ଦେବ । ଖତ ଗଳିଯିବା ପରେ ମାଟିଖୋସାଇ ହାତେ ଲମ୍ବର ଲଟାକୁ ଦୁଇଖଣ୍ଡ ଖଣ୍ଡେ ପୋତି ଦେବ । ଲଟା ଗଣ୍ଠିରୁ ଚେର ବାହାରିବ ଓ ଲଟା ଅଗରୁ ଷଣ୍ଢା ବାହାରି ଲଟେଇବ ।

**ଭାଡ଼ି** :— କୁନ୍ଦୁରି ଶୀଘ୍ର ଶୀଘ୍ର ଲଟାଏ । ଦୁଇ ତିନି ହାତ ଉଚ୍ଚରେ ଭାଡ଼ି କରି ଦେଇ ଲଟା ମଡ଼ାଇବ ନଚେତ୍ ବାଡ଼ରେ ବା ବଡ଼ଗଛ ଦେହରେ ମଡ଼ାଇ ଦେବ ।

ଖରାଦିନରେ ଲଟା ମୂଳରେ ମଦା କରି ପାଣି ଦେବ ।

# କଇଁଅ କାକୁଡି

## ( କାକଚଞ୍ଚ, ବିମ୍ବଫଳ )

## COCCINIA INDICA

## CEPHALANDRA INDICA

କଇଁଅ କାକୁଡ଼ି ବହୁବର୍ଷ ସ୍ଥାୟୀ ଲଟା । ଏହା ବର୍ଷା ଦିନରେ ଯେତେ ଘନ ଭାବରେ ନ ମାଡେ, ଶୀତ ଓ ଖରାଦିନରେ ସେତେ ସତେଜରେ ଓ ଘନ ଭାବରେ ମାଡେ । ଲଟାର ଗଣ୍ଠି ଗଣ୍ଠିରୁ ଚେର ବାହାରି ମାଟି ଧରିନିଏ । ସୁତରାଂ ଗୋଟାଏ ମୂଳ କାଟି ଦେଲେ ଅନ୍ୟ ମୂଳ ଗୁଡ଼ିକର ସାହାଯ୍ୟରେ ବଢ଼େ ।

ଦୁଇ ପ୍ରକାର ଲଟା ଅଛି । ଅଣ୍ଡିରି ଲଟାକୁ "ଗୋଲୁ ଖିଅ" ଏବଂ ମାଈ ଲଟାକୁ "କଇଁଅ କାକୁଡ଼ି" ଲଟା କୁହାଯାଏ ।

ଫୁଲ ଧଳା ଫଳ ପୋଟଳ ପରି । କଞ୍ଚାବେଳେ ପିତା ଲାଗେ । ପାଚିଗଲେ ଟୋପା ଲାଲ ଦେଖାଯାଏ । ଏହି ରଙ୍ଗ ସହିତ ସ୍ତ୍ରୀମାନଙ୍କ ଓଠ ତୁଳନା କରି କବିମାନେ 'ବିମ୍ବଓଷ୍ଠୀ' ବର୍ଣ୍ଣନା କରିଥାନ୍ତି ।

କଇଁଅ କାକୁଡ଼ି ଚାଷ କରାଯାଏ ନାହିଁ । ଚଢ଼େଇମାନେ ପାଚିଲା କଇଁଅକାକୁଡ଼ି ଏଣେତେଣେ ଖାଇ ପକାଇ ଏହାର ବଂଶ ବୃଦ୍ଧି କରିଥାନ୍ତି । ଏହା ବାଡ଼ବୁଦାରେ ଗୋଟାଏ ଅନାବନା ଗଛ ।

---

## ସପ୍ତମ ପରିଚ୍ଛେଦ

# ଚୋଚୋ ବା ଚାୟୋଟ୍

# CHO-CHO, CHAYOTE

## SECHIUM EDULIS

ଚୌ-ଚୌ ଓଡ଼ିଶାର କୋରାପୁଟ ଜିଲ୍ଲା ଛଡ଼ା ଅନ୍ୟ ଅଞ୍ଚଳରେ ଚାଷ କରାଯାଏ ନାହିଁ । କୋରାପୁଟ ଜିଲ୍ଲାରେ ଏହାକୁ "ମହୀଶୂର ବାଇଗଣ" କହୁଥାନ୍ତି । ମହୀଶୂର ଏବଂ ମାନ୍ଦ୍ରାଜର ନୀଳଗିରି ପାହାଡ଼ିଆ ଅଞ୍ଚଳରେ ଏହା ବିଶେଷ ପରିମାଣରେ ଚାଷ କରାଯାଏ ।

ମେକ୍ସିକୋ, ମଧ୍ୟ ଆମେରିକା ଓ ପଶ୍ଚିମ ଭାରତୀୟ ଦ୍ୱୀପ ପୁଞ୍ଜ ଚୌଚୋର ଜନ୍ମସ୍ଥାନ । ଏହି ଅଞ୍ଚଳ ଗୁଡ଼ିକରେ ଏହା ଗୋଟିଏ ପ୍ରଧାନ ପରିବା ।

ଚୋଚୋ ବହୁ ବାର୍ଷିକ ଲଟା । ଏହା ଏକହଜାର ଫୁଟରୁ ଉଚ୍ଚ ପାହାଡ଼ିଆ ଅଞ୍ଚଳରେ ଭଲ ବଢେ । ପଟାଙ୍ଗି କୋରାପୁଟ ଡୁଡୁମା ଓ ମାଲ୍କାନଗିରି ଅଞ୍ଚଳରେ ଏହା ଅତି ସହଜରେ ଚାଷ କରାଯାଇ ଅଛି ।

ମହୀଶୂର ବାଇଗଣ ଦେଖିବାକୁ ଲମ୍ବା ପିଜୁଳି ପରି । ବର୍ଣ୍ଣ ଗାଢ ଶାଗୁଆ କିମ୍ବା ହାତୀଦାନ୍ତ ପରି ଧଳା । ଫଳ ଦେହଟା ଯାକ ଖାବୁଡ଼ାଖୁବୁଡ଼ । ପ୍ରତ୍ୟେକ ଫଳ ଅଧପାଏରୁ ଏକସେର ପର୍ଯ୍ୟନ୍ତ ଓଜନ ହୁଏ ।

**ବଂଶ ବୃଦ୍ଧି** :— ଫଳରେ ଗୋଟିଏ ମଞ୍ଜି ଥାଏ । ଫଳ ବୃକ୍ଷା ଲଗାଯାଏ । ଫଳ ପାଚିବା ପୂର୍ବରୁ ମଞ୍ଜିରୁ ଗଛ ବାହାରୁଥିବା ଜାତର ଉଦ୍ଭିଦକୁ "ଭିଭିପାରସ୍" ( Viviparous ) ଉଦ୍ଭିଦ କୁହାଯାଏ ଅଷାଢ ମାସରୁ ପୌଷମାସ ଯାଏ ଲଗାଯାଏ ।

**ଲଗାଇବା ପ୍ରଣାଳୀ** :— ହାତେ ଚଉଡ଼ା ଓ ଗଭୀରତାରେ ମନ୍ଦା ଖୋଳିବ । ମନ୍ଦା ମାଟିର ଏକଭାଗ ପୁରୁଣା ଖତ ପାଉଁଶ ଦେଇ ଫେଣ୍ଟିଦେବ । ଖତ ରସିଯିବା ପରେ ମାଟିକୁ ଖୋଳାଇ ଚୋଟେ ଫଳର ସରୁଆ ପାଖ ଉପରକୁ ରଖି ଲଗାଇବ ।

**ରକ୍ଷାଦେବା** :— ଚୋଟେ ଲଟା ଶାଖା ମେଲି ବହୁତ ଲଟାଏ । ରକ୍ଷା ପୋତଦେବ, ନଚେତ୍ ବାଡରେ ମଡାଇ ଦେବ । ଗଛ ଲଟେଇ ବାର ତିନିମାସ ପରେ ଫୁଲ ଅସେ । ମାସକ ମଧ୍ୟରେ ଫଳ ତରକାରି ଯୋଗ୍ୟ ହୋଇଯାଏ ।

ବର୍ଷକ ପରେ ଚେରର କନ୍ଦମୂଳ ପରି ମୋଟା ହୋଇଯାଏ ।




Printed by Shree Narahari Nayak at
Bharati Press, Kendrapara Cuttack, 1953